# ଜାତିପ୍ରାଣ ମଧୁସୂଦନ

# JATIPRANA MADHUSUDAN

ବିମଳେନ୍ଦୁ ମହାନ୍ତି

**Bimalendu Mohanty**

ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ
ମୋବାଇଲ୍ : ୯୯୩୭୬୯୪୭୮୧

**Publisher's Adviser**
Sri Binod Bihari Bisoi
Mob. : 9937694781

ପ୍ରକାଶକ
ଜ୍ଞାନଯୁଗ ପବ୍ଲିକେଶନ
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୫୫୨୦୯୧

**Publisher**
Gyanajuga Publication
N-6/428, I.R.C. Village
Nayapalli, Bhubaneswar-15
Phone : 2552091

ଅକ୍ଷର ବିନ୍ୟାସ
ବି. ଏନ୍. ଗ୍ରାଫିକ୍ସ
ଏନ୍-୫/୨୩୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ : ୨୫୫୪୭୧୧

**Type Setting**
B. N. Graphics
N-5/238, I.R.C. Village
Nayapalli, Bhibaneswar-15
Phone : 2554711

ମୁଦ୍ରକ
କ୍ରିଏଟିଭ୍ ଅଫସେଟ୍
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୫୫୨୦୯୧

**Printer**
Creative Offset
N-6/428, I.R.C. Village
Nayapalli, Bhubaneswar-15
Phone : 2552091

ପ୍ରଚ୍ଛଦ : ଦେବାଶିଷ ମହାପାତ୍ର
(୦୬୭୪) ୨୫୫୦୭୯୮

Cover : Debashis Mohapatra
(0674) 2550798

ପ୍ରଥମ ପ୍ରକାଶ—୨୦୧୧
ଦ୍ୱିତୀୟ ପ୍ରକାଶ—୨୦୧୨

1st Edition—2011
2nd Edition—2012

ମୂଲ୍ୟ : ଟ. ୮୦/-

**Rs. 80/-**

Published by Smt. Susama Bisoi on behalf of Gyanajuga Publication
N-6/428, IRC Village, Nayapalli, Bhubaneswar-751015, Odisha
Ph. : (0674) 2552091

# ସମର୍ପଣ

ମୁଁ ଚାକିରିରୁ ଅବସର ଗ୍ରହଣ କରିବା ପରେ ମୋର ସହଧର୍ମିଣୀ ଡକ୍ଟର ବେଦବତୀ ମହାନ୍ତି ଟିକିଏ ବିବ୍ରତ ହୋଇପଡ଼ିଲେ । ଭାବୁଥିଲେ ଯେ ସବୁବେଳେ କର୍ମଚଞ୍ଚଳ ଥିବା ତାଙ୍କ ସ୍ୱାମୀ କିଭଳି ସମୟର ଉପଯୋଗ କରିବେ । କିନ୍ତୁ ପରେ ମୋତେ ସବୁବେଳେ ପଢିବାରେ ନିମଗ୍ନ ଥିବା ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେଉଥିବା ମୋର ପ୍ରବନ୍ଧମାନ ପଢ଼ି ଯେତେବେଳେ କେତେକ ବନ୍ଧୁ ଟେଲିଫୋନ୍ ମାଧ୍ୟମରେ କିମ୍ବା ଘରକୁ ଆସି ମୋ ଲେଖାପାଇଁ ସାଧୁବାଦ ଜଣାଉଥିଲେ ତାହା ତାଙ୍କୁ ଆମୋଦିତ କରୁଥିଲା । ସେ ମଧ୍ୟ ମୋ ପ୍ରଶଂସକଙ୍କ ମଧ୍ୟରେ ସାମିଲ୍ ହୋଇଯାଉଥିଲେ । ତାଙ୍କ ପ୍ରେରଣା ଓ ପ୍ରଶଂସା ମୋର ଲେଖିବାର ଉତ୍ସାହକୁ ଦ୍ୱିଗୁଣିତ କରିଛି । ମଧୁବାବୁଙ୍କ ପ୍ରତି ଆମ ଦୁଇଜଣଙ୍କର ଶ୍ରଦ୍ଧା ଓ ସମ୍ମାନ କୌଣସି ବ୍ୟକ୍ତିଙ୍କଠାରୁ କମ୍ ନୁହେଁ । ମଧୁବାବୁଙ୍କ ଜୀବନୀ ଲେଖିବାକୁ ସେ ମୋତେ ଅକୁଣ୍ଠ ସାହାଯ୍ୟ ଓ ସହଯୋଗ ସହିତ ସବୁବେଳେ ଉତ୍ସାହିତ କରିଥିବାରୁ ଏହି ପୁସ୍ତକଟି ତାଙ୍କରି କରକମଳରେ ଅର୍ପଣ କରୁଛି ।

ବିମଳେନ୍ଦୁ

# ଲେଖକୀୟ

କଟକରେ ଅବସ୍ଥିତ ଷ୍ଟୁଆର୍ଟ ସାଇନ୍ସ କଲେଜରେ ୧୯୬୦ ମସିହାରେ ସାଧାରଣ ଜ୍ଞାନର ଅଧ୍ୟାପକ ଭାବେ ଯୋଗ ଦେଲାପରେ ଉତ୍କଳ ଦିବସ ପାଳନ ଅବସରରେ କେତେକ ଅନୁଷ୍ଠାନରେ ଅନୁଷ୍ଠିତ ହେଉଥିବା ସଭାମାନଙ୍କରେ ବକ୍ତୃତା ଦେବାକୁ ନିମନ୍ତ୍ରଣ ପାଇଥିଲି । ସେତେବେଳେ ମଧୁସୂଦନ ଦାସଙ୍କ ସଂପର୍କରେ କାଁ ଭାଁ କେତୋଟି ପ୍ରବନ୍ଧକୁ ବାଦ୍ ଦେଲେ ତାଙ୍କ ଜୀବନୀ ସମ୍ବନ୍ଧରେ ପୁସ୍ତକଟିଏ ମିଳିବା କଷ୍ଟସାଧ ଥିଲା । କିନ୍ତୁ ଆମ କଲେଜରୁ 'ସମାଜ' ଅଫିସ୍ ଖୁବ୍ ନିକଟରେ ଅବସ୍ଥିତ ଥିବାରୁ ସେଠାକୁ ଯାଇ 'ସମାଜ'ର ସଂପାଦକ ରାଧାନାଥ ରଥଙ୍କ ଠାରୁ ଅନୁମତି ଆଣି 'ସମାଜ' ପାଠାଗାରରେ ମଧୁସୂଦନ ଦାସଙ୍କର ଜୀବନୀ ସଂପର୍କରେ ଲେଖାମାନ ପଢ଼ିଲି । ଜଣେ ବ୍ୟକ୍ତି କିପରି ନିଜର ଜୀବନକୁ ତିଳେ ତିଳେ ଜାଳି ଓଡ଼ିଆ ଜାତିକୁ ଏକତ୍ର କରିବାରେ ନିଜର ସମଗ୍ର ଜୀବନ ବିତାଇ ଦେଇଥିଲେ ତାହା ଜାଣିଲି ଓ ତା'ପରେ ଅଧିକ ଜାଣିବାକୁ ଆଗ୍ରହ ସୃଷ୍ଟି ହେଲା ।

ସେତେବେଳେ ଶୈଳବାଳା ମହିଳା ମହାବିଦ୍ୟାଳୟ ପ୍ରାଙ୍ଗଣରେ ମଧୁବାବୁଙ୍କ ପାଳିତା କନ୍ୟା ଶୈଳବାଳା ଦାସ ଏକ ସ୍ୱତନ୍ତ୍ର ଆବାସରେ ଅବସ୍ଥାନ କରୁଥିଲେ । ତାଙ୍କୁ ବହୁବାର ଦେଖାକରି ମଧୁବାବୁଙ୍କ ଅସୀମ ତ୍ୟାଗ ବିଷୟରେ ଅନେକ କଥା ଜାଣିବାକୁ ପାଇଲି । ୧୯୬୨ ମସିହା ଠାରୁ ନିରବଚ୍ଛିନ୍ନ ଭାବରେ ପ୍ରତିବର୍ଷ ମୁଁ ଯେଉଁଠାରେ ଚାକିରି କରୁଥିଲେ ମଧ ମଧୁସୂଦନ ଦାସଙ୍କ ଜୟନ୍ତୀ ପାଳନ କରିବା ଆୟୋଜନ କରୁଥିଲି ।

ବହୁବର୍ଷ ଧରି ଲକ୍ଷ୍ୟ କରିଛି ଓଡ଼ିଆ ଜାତିର ଜନକ, ଓଡ଼ିଶା ପ୍ରଦେଶର ନିର୍ମାତା, ଓଡ଼ିଶାର ପ୍ରତ୍ୟେକ କ୍ଷେତ୍ରରେ ଅଗ୍ରଗଣ୍ୟ ମଧୁସୂଦନଙ୍କ ଜୟନ୍ତୀ କିମ୍ବା ଶ୍ରାଦ୍ଧୋତ୍ସବ ନିଷ୍ଠାର ସହିତ ପାଳନ କରାଯାଏ ନାହିଁ । ଏହାର କାରଣ ସମ୍ପର୍କରେ ଅନୁଧ୍ୟାନ କରି ଜାଣିଛି ଯେ ମଧୁସୂଦନ ଦାସଙ୍କ ବିଷୟରେ କୌଣସି ଗବେଷଣା କରାଯାଉ ନାହିଁ ଏବଂ ତାଙ୍କ କୃତି ସମ୍ବନ୍ଧରେ ଓଡ଼ିଶାର ଜନସାଧାରଣ ବିଶେଷକରି ଯୁବ ସମାଜ ବିଶେଷ କିଛି ଜାଣିନାହାନ୍ତି । ଗତ ଚାରି ଦଶନ୍ଧି ଭିତରେ ବିଶିଷ୍ଟ ସାହିତ୍ୟିକ ଯଥା– ସୁରେନ୍ଦ୍ର ମହାନ୍ତି, ସ୍ୱାଧୀନତା ସଂଗ୍ରାମୀ ପଦ୍ମଚରଣ ନାୟକ, ମଧୁପ୍ରେମୀ ଗବେଷକ ସୁରସିଂହ ପଟ୍ଟନାୟକ, ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ, ପ୍ରଫେସର ସର୍ବେଶ୍ୱର

ଦାସ, ସଚ୍ଚିଦାନନ୍ଦ ଦାସ ପ୍ରମୁଖ ମଧୁବାବୁଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକମାନ ରଚନା କରିଥିଲେ ମଧ୍ୟ ଆହୁରି ଅନେକ ପୁସ୍ତକ ରଚନା କରିବାର ଅବକାଶ ରହିଛି । ଏ ଦିଗରେ ରାଉରକେଲାସ୍ଥ ପ୍ରଗତି ଉତ୍କଳ ସଂଘର ଉଦ୍ୟମ ପ୍ରଶଂସନୀୟ ।

୨୦୦୩ ମସିହାରୁ 'ସମ୍ବାଦ' ସମ୍ପାଦକ ତଥା 'ଆମ ଓଡ଼ିଶା' ଅଧ୍ୟକ୍ଷ ଶ୍ରୀଯୁକ୍ତ ସୌମ୍ୟରଂଜନ ପଟ୍ଟନାୟକ ପ୍ରତିବର୍ଷ ମଧୁସୂଦନ ଦାସଙ୍କ ଜନ୍ମ ଦିବସକୁ 'ସ୍ୱାଭିମାନ ଦିବସ' ରୂପେ ପାଳନ କରି ସାରା ଓଡ଼ିଶାରେ ଏକ ନୂତନ ଜାତିପ୍ରେମ ସୃଷ୍ଟି କରିବାକୁ ଉଦ୍ୟମରତ ଅଛନ୍ତି ।

ମୋତେ ବିଭିନ୍ନ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନମାନେ ମଧୁସୂଦନ ଦାସଙ୍କ ଜୀବନୀ ଉପରେ ତଥ୍ୟ ସମ୍ବଳିତ ଏକ ପୁସ୍ତକ ରଚନା କରିବାକୁ ଅନୁରୋଧ ଜଣାଇଥିଲେ । ଭାବିଲି, ଓଡ଼ିଆ ଭାବେ ପ୍ରତ୍ୟେକ ବ୍ୟକ୍ତିର ମଧୁବାବୁଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ଏକ ପବିତ୍ର କର୍ତ୍ତବ୍ୟ । ମଧୁସୂଦନ ଦାସଙ୍କ ଜୀବନୀ ରଚନା କରି ଏହି ପବିତ୍ର କର୍ତ୍ତବ୍ୟ ସମ୍ପନ୍ନ କରିବାକୁ ମୁଁ ସାମାନ୍ୟ ଉଦ୍ୟମ କରିଛି । ଏହା ପାଠକଙ୍କ ଦ୍ୱାରା ଆଦୃତ ହେଲେ ଉପକୃତ ହେବି । ଯଦି ମୋର ଏହି ପୁସ୍ତକ ପାଠକରି ଓଡ଼ିଶାର ଯୁବସମାଜ ମଧୁସୂଦନଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୁଅନ୍ତି, ତେବେ ମୋର ଶ୍ରମ ସାର୍ଥକ ହେବ ।

ହିମାଂଶୁ ମହାନ୍ତି ।

# ଉପକ୍ରମ

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପ୍ରକ୍ରିୟାରେ ଯେଉଁ କେତେଜଣ ଯୋଗଜନ୍ମା ପୁରୁଷଙ୍କ ନାମ ଅତି ଭକ୍ତିର ସହିତ ଉଚ୍ଚାରଣ କରାଯାଏ ସେମାନଙ୍କ ମଧ୍ୟରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ନାମ ଅଗ୍ରଗଣ୍ୟ । ଆଜି ଆମେ ଯେଉଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଅଧିବାସୀ ଭାବରେ ଗର୍ବ କରୁଛେ ତାହା ମଧୁସୂଦନ ଦାସଙ୍କ ଜୀବନବ୍ୟାପୀ ଉଦ୍ୟମ ଓ ତ୍ୟାଗ ଯୋଗୁ ହିଁ ସମ୍ଭବ ହୋଇ ପାରିଛି । ୧୯୩୬ ମସିହା ଏପ୍ରିଲ ପହିଲା ପୂର୍ବରୁ ଆଜିର ଓଡ଼ିଶା ରାଜ୍ୟ ଖଣ୍ଡ ବିଖଣ୍ଡିତ ହୋଇ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗଳା, ଆନ୍ଧ୍ର ଏବଂ ବିହାର ସହିତ ମିଶି ରହିଥିଲା । ୧୮୬୬ ମସିହାରେ ଘଟି ଯାଇଥିବା କରାଳ ନ'ଅଙ୍କ ଦୁର୍ଭିକ୍ଷ ଓଡ଼ିଶା ବାସୀଙ୍କର ମେରୁଦଣ୍ଡକୁ ସବୁଦିନ ପାଇଁ ଦୋହଲେଇ ଦେଇଥିଲା । ୧୮୦୩ ମସିହାରେ ଓଡ଼ିଶାରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଶାସନ ଆରମ୍ଭ ହେବାର କିଛି ମାସ ଭିତରେ ବହୁଦିନରୁ ଓଡ଼ିଶାରେ ପ୍ରଚଳିତ ହୋଇ ଆସୁଥିବା 'କଉଡ଼ି ମୁଦ୍ରା'କୁ ବ୍ରିଟିଶ ସରକାର ନିଷିଦ୍ଧ ଘୋଷଣା କରିଦେଲେ । ଦୀର୍ଘ ଦିନରୁ ବଳବତ୍ତର ରହି ଆସିଥିବା ଜମିଦାରୀ ବ୍ୟବସ୍ଥା ମଧ୍ୟ ଓଡ଼ିଶା ବାହାରର ବଙ୍ଗାଳୀମାନଙ୍କର ଅକ୍ତିଆରକୁ ଚାଲିଯିବାରେ ଲାଗିଲା । ଗୋଟିଏ ପଟରେ ନ'ଅଙ୍କ ଦୁର୍ଭିକ୍ଷ, ଅନ୍ୟପଟରେ କଉଡ଼ି ମୁଦ୍ରା ଉପରେ କଟକଣା ତଥା ଜମିଦାରମାନଙ୍କ ଶୋଷଣ ଯୋଗୁ ଓଡ଼ିଶା ବାସୀଙ୍କର ଆର୍ଥିକ ଓ ସାମାଜିକ ଅବସ୍ଥା ଦିନକୁ ଦିନ ମୁମୂର୍ଷୁ ଅବସ୍ଥାକୁ ଗତି କରୁଥିଲା । ପୁଣି ଭାଷାଗତ ବିଭେଦ ଓଡ଼ିଶାର ଭୌଗୋଳିକ ସ୍ଥିତିକୁ ସନ୍ଦିହାନ କରିବା କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ଏହି ସମୟରେ କେବଳ ଜଣିଏ ମାତ୍ର ବ୍ୟକ୍ତି କର୍ମବୀର ଗୌରୀଶଙ୍କର ରାୟ ନିଜ ସମ୍ପାଦିତ ସମ୍ବାଦପତ୍ର ତଥା ଓଡ଼ିଆ ଭାଷାର ପ୍ରଥମ ସମ୍ବାଦପତ୍ର 'ଉତ୍କଳ ଦୀପିକା' ଜରିଆରେ ଭାଷା ଆନ୍ଦୋଳନକୁ ତ୍ୱରାନ୍ୱିତ କରିବାର ପ୍ରୟାସ ଜାରି ରଖିଥିଲେ । ଓଡ଼ିଶା କହିଲେ ସେତେବେଳେ ଲୋକମାନେ ବୁଝୁଥିଲେ ଯେ, ଏହା ହେଉଛି ବଣଜଙ୍ଗଲ ଘେରା, ବଢ଼ି ମରୁଡ଼ିରେ ସଢୁଥିବା ଗୋଟେ ପଛୁଆ ଜାତିର ବାସସ୍ଥଳୀ; ଯାହା ପ୍ରତି ସରକାରଙ୍କର ସ୍ୱତନ୍ତ୍ର ଦୃଷ୍ଟି ଦେବାର କୌଣସି ଆବଶ୍ୟକତା ନାହିଁ । ଏଇଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଓଡ଼ିଶାରେ ମଧୁସୂଦନ ଦାସଙ୍କ ଆବିର୍ଭାବ ହୋଇଥିଲା । ତାଙ୍କର ଜାତିପ୍ରୀତି, ଓଡ଼ିଆ ଭାଷା ପ୍ରତି ମମତା, ଶ୍ରଦ୍ଧା ଓ ସମ୍ମାନ

ତଥା ନିଜ ଭିତରର ପ୍ରଚଣ୍ଡ ସ୍ୱାଭିମାନ ଆଜି ବି ଓଡ଼ିଆମାନଙ୍କର ବହୁମୂଲ୍ୟ ସମ୍ବଳ ହୋଇ ରହିଛି ଓ ଅନ୍ତରୀକ୍ଷରେ ସୂର୍ଯ୍ୟ ଚନ୍ଦ୍ର ଥିବା ଯାଏ ଓଡ଼ିଶା ବାସୀଙ୍କ ହୃଦୟରେ ତାହା ପାହାନ୍ତି ଆକାଶର ଧ୍ରୁବତାରା ହୋଇ ଝଟକୁ ଥିବ ।

ପରିସ୍ଥିତି ଓ ପରିବେଶର ଚାପରେ ପଡ଼ି ମଧୁସୂଦନ ହିନ୍ଦୁଧର୍ମ ଛାଡି ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ହେଲେ ହିନ୍ଦୁଧର୍ମର ସଂସ୍କାର, ପରମ୍ପରା, ଉଚ୍ଚ ଆଦର୍ଶ, ମୂଲ୍ୟବୋଧକୁ ତିଳେ ବି ପାଶୋରି ଦେଇ ନ ଥିଲେ । ଶେଷବେଳକୁ ଦାରିଦ୍ର୍ୟର କଶାଘାତରେ ତାଙ୍କର ଜୀବନ ଅସ୍ତବ୍ୟସ୍ତ ହୋଇ ପଡ଼ିଥିଲା । ତଥାପି ସେ ନିଜର ସ୍ୱାଭିମାନକୁ ଭୂମିସ୍ପର୍ଶ କରିବାକୁ ଦେଇ ନ ଥିଲେ । ସେଇଥିପାଇଁ ଆଜି ସେ ଜାଜ୍ୱଲ୍ୟମାନ ନକ୍ଷତ୍ର ଭଳି ଉଦ୍ଭାସିତ ହୋଇ ରହିଛନ୍ତି ଜଣେ ସ୍ୱାଭିମାନୀ ଓଡ଼ିଆ ଭାବରେ, ପ୍ରଚଣ୍ଡ ମେଧାସମ୍ପନ୍ନ ତଥା ପ୍ରତ୍ୟୁତ୍ପନ୍ନମତି ବାରିଷ୍ଟର ଭାବରେ ପୁଣି ଦରିଦ୍ରର ଜଣେ ଆଶାଭରସା ଭାବରେ । ଜାତିର ଜନକ ମହାତ୍ମା ଗାନ୍ଧୀ ତାଙ୍କୁ ଲିଓ ଟଲଷ୍ଟୟଙ୍କର ଦ୍ୱିତୀୟ ଅବତାର ବୋଲି ବିବେଚନା କରୁଥିଲେ । ଶ୍ରୀ ଅରବିନ୍ଦ ତାଙ୍କୁ ଜଣେ ଦୈବୀଶକ୍ତି ସମ୍ପନ୍ନ ବ୍ୟକ୍ତିତ୍ୱ (a highly spirited leader) ବୋଲି କହୁଥିଲେ । ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ତାଙ୍କୁ ଭାରତର ଜଣେ ମହାନ୍ ନେତା ଭାବରେ ଗ୍ରହଣ କରିବାକୁ ତିଳେ ବି କୁଣ୍ଠାବୋଧ କରି ନ ଥିଲେ ।

ଆଜି ବି ପୁରପଲ୍ଲୀରେ ମା'ଟିଏ ତା'ର ପିଲାକୁ ଗୀତ ଗାଇ ଶୁଆଇ ଦେଉଥାଏ- "ପାଠ ପଢ଼ିବିରେ ପାଠ ପଢ଼ିବି - କାଳିଆ ଘୋଡ଼ାରେ ଚଢ଼ିବି - ମଧୁ ବାରିଷ୍ଟର ସଙ୍ଗେ ଲଢ଼ିବି ।" ଆଜି ବି ଓଡ଼ିଶା ଓ ଓଡ଼ିଆଙ୍କୁ ଭଲ ପାଉଥିବା ଯୁବକଟିଏ ଅତି ଶ୍ରଦ୍ଧାର ସହିତ ସ୍ୱୀକାର କରିଥାଏ ଯେ, ସେ ସେହି ମାଟିର ସନ୍ତାନ ଯେଉଁ ମାଟିରେ ଦିନେ ଉତ୍କଳ ଗୌରବ ମଧୁସୂଦନ ଜନ୍ମ ହୋଇଥିଲେ ।

# ସୂଚୀପତ୍ର

# ଜନ୍ମ ଓ ଶୈଶବ

କଟକ ସହର ଠାରୁ ୨୦ କିଲୋମିଟର ପଥ ଅତିକ୍ରମ କରିଗଲେ ଗୋଟିଏ ଛୋଟିଆ ଗାଁ ପଡେ । ସେହି ଗାଁର ନାଁ ସତ୍ୟଭାମାପୁର । କିମ୍ବଦନ୍ତୀ ଅନୁଯାୟୀ ଷୋଡ଼ଶ ଶତାବ୍ଦୀରେ ସୂର୍ଯ୍ୟବଂଶୀ ରାଜା ପୁରୁଷୋତ୍ତମଦେବଙ୍କ ପତ୍ନୀ, ରାଣୀ ସତ୍ୟଭାମା ଦେବୀ ଏହି ଗ୍ରାମଟିକୁ ପ୍ରତିଷ୍ଠା କରାଇଥିଲେ । ସେହିହେତୁ ଏହାର ନାମ ସତ୍ୟଭାମାପୁର ହୋଇଛି । ଏହି ଗ୍ରାମରେ ଏକ ସମ୍ଭ୍ରାନ୍ତ କରଣ ପରିବାରରେ ୧୮୪୮ ମସିହା ଏପ୍ରିଲ ମାସ ୨୮ ତାରିଖ ମଙ୍ଗଳବାର ଦିନ ମଧୁସୂଦନ ଦାସ ଜନ୍ମ ଗ୍ରହଣ କରିଥିଲେ । ଚୌଧୁରୀ ରଘୁନାଥ ଦାସ ଓ ପାର୍ବତୀ ଦେବୀଙ୍କର ସେ ଥିଲେ ତୃତୀୟ ସନ୍ତାନ । ତାଙ୍କର ଦୁଇଟି ବଡ଼ ଭଉଣୀ ଓ ଜଣେ ସାନଭାଇ ଥିଲେ । ଜନ୍ମବେଳେ ମଧୁସୂଦନଙ୍କର ନାମ ଗୋବିନ୍ଦ ବଲ୍ଲଭ ଥିବା ବେଳେ ତାଙ୍କ ସାନଭାଇର ନାଁ ଗୋପାଳ ବଲ୍ଲଭ ଥିଲା । ରଘୁନାଥଙ୍କ ପରିବାର ଖଣ୍ଡାୟତ ଥିଲେ ଏବଂ ତାଙ୍କର ପୂର୍ବ ପୁରୁଷମାନେ ପାଇକଭୂଇଁ ଖୋର୍ଦ୍ଧାରୁ ଉଠିଆସି ଏଠାରେ ରହିଥିଲେ । ମଧୁସୂଦନଙ୍କ ଘରର ବଂଶାବଳିରେ ସ୍ପଷ୍ଟ ଲିଖିତ ଅଛି - 'ଏହି ବଂଶ ଖୋର୍ଦ୍ଧା ମୁକାମରୁ ପ୍ରଥମେ ଆଗମନ କରିଥିଲେ । ମଣିମଲ୍ଲ ଦେ ଖୋର୍ଦ୍ଧା ଜିଲ୍ଲା ରାଧିପୁର ମୁକାମରୁ ମୁତାରଫା ମୌଜାରୁ ଆସି ପଦ୍ମପୁର ପ୍ରଗଣାର ସତ୍ୟଭାମାପୁର ମୌଜାରେ ବସବାସ କରିଥିଲେ ।'

ଏକଦା ମଧୁସୂଦନଙ୍କ ବାପା ଚୌଧୁରୀ ରଘୁନାଥ ଦାସ ବହୁ ଭୂ-ସମ୍ପତ୍ତିର ଅଧିକାରୀ ଥିଲେ । ତାଙ୍କର ଗୋଟିଏ ବିରାଟ ଖଞ୍ଜାଘର ଥିଲା । ଘର ଚାରିପାଖରେ ଆମ୍ବତୋଟା, ନଡ଼ିଆମାଳ, ଫୁଲ ବଗିଚା ଆଦି ସଜେଇ ହୋଇ ରହିଥିଲା । ମାତ୍ର ୧୮୦୩ ମସିହାରେ ଓଡ଼ିଶା ଇଂରେଜଙ୍କ ହାତକୁ ଯିବା ପରେ ଅନ୍ୟମାନଙ୍କ ଭଳି ଚୌଧୁରୀ ପରିବାର ଉପରକୁ ମଧ ଦୁଃଖ ଦୁର୍ଦ୍ଦଶା ମାଡ଼ି ଆସିଲା । କମ୍ପାନୀ ଶାସନର 'ସୂର୍ଯ୍ୟାସ୍ତ ଆଇନ୍' ବଳରେ ସେ ଜମିଦାରୀ ହରେଇ ବସିଲେ । ପରିସ୍ଥିତି ଏମିତି ହେଲା, ଚୌଧୁରୀ ରଘୁନାଥ ନିଜ ପରିବାର ପୋଷଣ ପାଇଁ କଟକର ନିମ୍ନ ଅଦାଲତରେ ଓକିଲାତି କରିବା ଆରମ୍ଭ କଲେ । ସେ ଦାରିଦ୍ର୍ୟ ଭିତରେ କାଳାତିପାତ କରୁଥିଲେ ଏକଥା ସତ, ହେଲେ ନିଜର ଆତ୍ମ ଗୌରବକୁ କେବେ ବି କ୍ଷୁଣ୍ଣ ହେବା ପାଇଁ ଦେଉ ନ ଥିଲେ । ମଧୁସୂଦନଙ୍କ ମା' ପାର୍ବତୀ ଦେବୀ ଜଣେ ଧର୍ମପରାୟଣା ଓ ଅତ୍ୟନ୍ତ ଦୟାଳୁ ମହିଳା ଥିଲେ । ସେ ଏକ କୁଳୀନ ତଥା ଦରିଦ୍ର ପରିବାରର କନ୍ୟା ଥିଲେ ।

ପାର୍ବତୀ ଦେବୀଙ୍କର ସଂସ୍କାରୀ ମନୋଭାବ, ନୈତିକ ଜୀବନର ପ୍ରଭାବ ଶୈଶବରୁ ମଧୁସୂଦନଙ୍କ ଉପରେ ପଡିଥିଲା । ମା' ସବୁବେଳେ ତାଙ୍କୁ ଗୋଟିଏ କଥା କହୁଥିଲେ - 'ଆଲୋ ସଖୀ, ଆପଣା ମହତ ଆପେ ରଖି !' ମା'ଙ୍କର ଏହି କଥାଟିକୁ ମଧୁସୂଦନ ସାରା ଜୀବନ ଅକ୍ଷରେ ଅକ୍ଷରେ ପାଳନ କରି ଆସିଥିଲେ । ପିଲାଟି ବେଳୁ ମା' ତାଙ୍କୁ ଏକ ମହତ କଥା ଶିଖାଇଥିଲେ । ସେ କହୁଥିଲେ - 'ଉଚ୍ଚ ପଦସ୍ଥ ଲୋକଙ୍କ ସହିତ କେବଳ ମିଶି ସମ୍ମାନ ପାଇବାକୁ ଚେଷ୍ଟା କରିବ ନାହିଁ । ଗୋଲାପ ଚାରିପାଖର ଘାସ ଗୋଲାପ ଫୁଲର ସୁବାସ କିମ୍ବା ରଙ୍ଗ ପାଏନାହିଁ ।'

ମଧୁସୂଦନଙ୍କ ଶୈଶବ କଟିଥିଲା ତାଙ୍କର ଜେଜେ ମା' ବା ସାଆନ୍ତ ମା'ଙ୍କ ପାଖରେ । ସେହି ମହିୟସୀ ମହିଳା ତାଙ୍କୁ ଅତି ଆଦର ଯତ୍ନରେ ବଢ଼ାଇଥିଲେ ଓ ଶୋଇବା ଶେଯରେ ବଂଶର ଅତୀତ ଗୌରବର କାହାଣୀମାନ ଶୁଣାଉଥିଲେ । ଫଳ ସ୍ୱରୂପ ପିଲାଟି ବେଳୁ ହିଁ ମଧୁସୂଦନଙ୍କ ଭିତରେ ଏକ ଆଦର୍ଶ ତଥା ଉଚ୍ଚାକାଙ୍‌କ୍ଷାର ବୀଜ ବୁଣି ହେଇ ଯାଇଥିଲା ।

## ପାଠପଢ଼ା ଓ କଟକ ଆଗମନ

ଶିଶୁ ମଧୁସୂଦନଙ୍କର ପ୍ରାଥମିକ ଶିକ୍ଷା ଗାଁ ଚାଟଶାଳୀରୁ ହିଁ ଆରମ୍ଭ ହୋଇଥିଲା । ବାପା ଚୌଧୂରୀ ରଘୁନାଥ ଦାସ ପୁଅର ପାଠପଢ଼ା ପାଇଁ ଜଣେ ଅବଧାନଙ୍କୁ ଘରେ ରଖାଇଥିଲେ ଏବଂ ସେଥିପାଇଁ ତାଙ୍କୁ ଖାଇବା ପିନ୍ଧିବାକୁ ଦେଇ ମାସକୁ ସାତଟଙ୍କା ବେତନ ଦେଉଥିଲେ । ଏହି ଚାଟଶାଳୀରେ ମଧୁସୂଦନ ଫଳା, ଅଙ୍କ, ଗଣିତ, ପୋଥି, ପୁରାଣ ଆଦି ଶିକ୍ଷା କରିଥିଲେ ।

ପିଲାବେଳେ ମଧୁସୂଦନ ଖୁବ୍ ଚପଳ ଓ ଚଞ୍ଚଳ ଥିଲେ । କେତେବେଳେ ଢୁଳଉଥିବା ଅବଧାନଙ୍କ ଜୋତା ଲୁଚେଇ ଦେଉଥିଲେ ତ କେତେବେଳେ ମା'ଙ୍କ ଉପରେ ଅଭିମାନ କରି ରାତିରେ ନ ଖାଇ ଶୋଇ ପଡୁଥିଲେ ।

ଚାଟଶାଳୀରେ ମଧୁସୂଦନଙ୍କର ପ୍ରାଥମିକ ଶିକ୍ଷା ଶେଷ ହେଲା । ପରେ ସେ ନିଜ ଗ୍ରାମ ସତ୍ୟଭାମାପୁର ନିକଟବର୍ତ୍ତୀ ମହାଙ୍ଗିପୁର ମିଡ଼ଲ ଭର୍ଣ୍ଣାକୁଲର ସ୍କୁଲ୍‌ରେ ନାଁ ଲେଖାଇଲେ । ସେଠାରେ ଜଣେ ମୌଲବୀଙ୍କ ପାଖରୁ ମଧୁସୂଦନ ପାର୍ସୀ ଭାଷା ଶିକ୍ଷା କରିଥିଲେ । ବାପା ଚୌଧୁରୀ ରଘୁନାଥ ଦାସଙ୍କର ପାର୍ସୀ ଭାଷାରେ ଦଖଲ

ଥିଲା । ସହଜେ ତ କଟକ ଅଦାଲତରେ ସେ ଓକିଲାତି କରୁଥିଲେ । ତେଣୁ ତାଙ୍କର ଇଚ୍ଛା ଥିଲା ଯେ, ମଧୁସୂଦନ ବେଶୀ ପାଠ ପଢ଼ି କଟକ କଚେରୀରେ କିରାଣି ଚାକିରି କରନ୍ତୁ ।

ମଧୁସୂଦନ କଟକ ଆସିଲେ ଓ ତାଙ୍କର କଟକର ସରକାରୀ ଜିଲ୍ଲା ସ୍କୁଲରେ ନାମଲେଖା ହେଲା । ଏହି ସ୍କୁଲଟି ପରବର୍ତ୍ତୀ କାଳରେ ରେଭେନ୍ସା କଲିଜିଏଟ ସ୍କୁଲ ନାମରେ ନାମିତ ଓ ଖ୍ୟାତ ହୋଇଥିଲା । କଟକରେ ସେତେବେଳେ ବହୁ ବଙ୍ଗାଳୀ ପରିବାର ବସବାସ କରୁଥିଲେ । ତେଣୁ ସରକାରୀ ସ୍କୁଲରେ ଅନେକ ବଙ୍ଗାଳୀ ପିଲା ପାଠ ପଢୁଥିଲେ । ମଧୁସୂଦନ ସେଠାକୁ ଆସିବାରୁ ତାଙ୍କ ଉପରେ ସେହିସବୁ ବଙ୍ଗାଳୀ ପିଲାଙ୍କର ନଜର ପଡ଼ିଲା । କାରଣ ମଧୁସୂଦନଙ୍କର ବେଶପୋଷାକ ଖୁବ୍ ମଫସଲିଆ ଥିଲା । ସେ ତନ୍ତବୁଣା ଲୁଗା ପିନ୍ଧୁଥିଲେ । ମୁଣ୍ଡରେ ଲମ୍ବା ବାଳ ରଖି ସେଥିରେ ପଛପଟେ ଗଣ୍ଠି ପକାଉଥିଲେ । ପୁଣି ଦୁଇ କାନରେ ଦୁଇଟା ନୋଳି ପିନ୍ଧୁଥିଲେ । ଇଂରେଜୀ ଢାଞ୍ଚାକୁ ଆଦରି ନେଇଥିବା ବଙ୍ଗାଳୀ ପିଲାଏ ମଧୁସୂଦନଙ୍କର ଏଭଳି ବେଶ ପୋଷାକ ଦେଖି ଖୁବ୍ ଥଟ୍ଟା ପରିହାସ କରୁଥିଲେ । ଏମିତି କି ଦିନେ ଜଣେ ସହପାଠୀ ତାଙ୍କ ଚୁଟିକୁ ପଛ ଆଡୁ କାଟି ଦେଇ ତାଙ୍କୁ ଅପଦସ୍ଥ କରିବାକୁ ଚେଷ୍ଟା କରିଥିଲା । ତେବେ ମଧୁସୂଦନ ଏ କଥାକୁ ଅତି ସାଧାରଣ ଭାବରେ ଗ୍ରହଣ କରିଥିଲେ । ଠିକ୍ ଏତିକି ବେଳେ ତାଙ୍କୁ ନେଇ ଏକ ଘଟଣା ଘଟିଲା, ଯାହା ତାଙ୍କ ପ୍ରତି ଥିବା ଅନ୍ୟମାନଙ୍କର ଭାବନାକୁ ଅତି ସହଜରେ ବଦଳେଇ ଦେଇଥିଲା ।

ଏଣ୍ଟ୍ରାନ୍ସ ବା ମାଟ୍ରିକ୍ୟୁଲେସନ୍ ପାଇଁ ଥିବା ଇଂରାଜୀ ବିଷୟଟିକୁ ଜଣେ ବଙ୍ଗାଳୀ ହେଡ୍‌ମାଷ୍ଟର ପଢ଼ାଉଥିଲେ । ସେ ଥରେ କ୍ଲାସରେ ଗୋଟିଏ ଅନୁଚ୍ଛେଦର ଭୁଲ ଅର୍ଥ କରି ପିଲାଙ୍କୁ ବୁଝାଉଥିଲେ । ମଧୁସୂଦନଙ୍କୁ ଏହାର ଠିକ୍ ଅର୍ଥ ମାଲୁମ ଥିଲା । ତେଣୁ ସେ ନିରବରେ ପ୍ରଧାନ ଶିକ୍ଷକଙ୍କର ଭୁଲକୁ ବରଦାସ୍ତ କରି ପାରିଲେ ନାହିଁ । ଠିଆ ହୋଇ ଚଟାପଟ କହିଦେଲେ ଯେ ସେ ଯାହା କହୁଛନ୍ତି ତାହା ଠିକ୍ ନୁହେଁ । ଏକଥା ଶୁଣି ବଙ୍ଗାଳୀ ହେଡ୍‌ମାଷ୍ଟର ତାଜୁବ୍ ହୋଇଗଲେ । ଜଣେ ସାଧାରଣ ଓଡ଼ିଆ ପିଲା ତାଙ୍କର ଭୁଲ ଧରିବ ? ପୁଣି ଭରା କ୍ଲାସ୍‌ରେ ଠିଆ ହୋଇପଡି ସେହି କଥା ପ୍ରକାଶ କରିଦେବ ? ଏ କଥାକୁ ସେ ସହଜରେ ଗ୍ରହଣ କରିପାରିଲେ ନାହିଁ । କ୍ରୋଧରେ ପାଚିଗଲେ । ତୁରନ୍ତ ତାଙ୍କର ନାମକୁ ସ୍କୁଲ ରେଜିଷ୍ଟରରୁ କାଟିଦେଲେ ଓ ତାଙ୍କୁ ସ୍କୁଲରୁ ବିତାଡ଼ିତ କରିଦେଲେ ।

## ଜାତିପ୍ରାଣ ମଧୁସୂଦନ

ଏହି ଘଟଣାରେ କିଛି ପରିମାଣରେ ବିବ୍ରତ ହୋଇପଡିଲେ ମଧୁସୂଦନ । ଏହା ପରେ ତାଙ୍କର ଇଂରାଜୀ ଶିକ୍ଷାର ଭବିଷ୍ୟତ କ'ଣ ସେକଥା ତାଙ୍କ ଆଖି ଆଗରେ ଜଳଜଳ ହୋଇ ଦିଶିଗଲା । ତାଙ୍କର ଇଂରାଜୀ ଶିକ୍ଷାର ମାର୍ଗ ଯେ ସବୁଦିନ ପାଇଁ ବନ୍ଦ ହୋଇଗଲା ସେଥିରେ ତାଙ୍କର ଟିକେ ବି ସନ୍ଦେହ ନ ଥିଲା । ହେଡ୍‌ମାଷ୍ଟରଙ୍କ ନିକଟକୁ ଯାଇ କ୍ଷମା ମାଗିବା ନିମନ୍ତେ ତାଙ୍କର ସହପାଠୀମାନେ ତାଙ୍କୁ ପରାମର୍ଶ ଦେଲେ । ହେଲେ ସେ ତ ଜନ୍ମରୁ ସ୍ୱାଭିମାନୀ ଥିଲେ । ସାଙ୍ଗମାନଙ୍କର ପରାମର୍ଶକୁ ବା ସେ କିପରି ଗ୍ରହଣ କରି ନିଅନ୍ତେ ! ତା'ଛଡା ଶ୍ରେଣୀକକ୍ଷରେ ଛାତ୍ରମାନଙ୍କୁ ଭୁଲ ପଢ଼ାଉଥିବା ଜଣେ ଅହଂକାରୀ ମଣିଷ ନିକଟକୁ ଯାଇ କ୍ଷମା ମାଗିବା ପାଇଁ ତାଙ୍କର ବିବେକ ତାଙ୍କୁ ଅନୁମତି ଦେଇପାରୁ ନ ଥିଲା । ତଥାପି ସେ ଧୈର୍ଯ୍ୟ ହରାଇ ନ ଥିଲେ । ଏହିପରି ଦ୍ୱନ୍ଦ୍ୱ, ଅଶାନ୍ତି, ଅସ୍ଥିରତା ଓ ଆଶଙ୍କା ମଧ୍ୟରେ ଥାଇ ସେ ନିଷ୍ପତ୍ତି ନେଲେ ଯେ ଏ ବିଷୟରେ ସ୍କୁଲର ମୁଖ୍ୟ କର୍ମକର୍ତ୍ତା ମି.ହିଲିଙ୍କୁ ସବୁକଥା ଜଣାଇଦେବେ । ତା'ପରେ ଯାହା ହେବାର ହେବ ଦେଖାଯିବ । ସେତେବେଳେ ଜଣେ ଇଂରେଜ ହାକିମଙ୍କ ନିକଟକୁ ଯିବା ସେତେଟା ସହଜ ନ ଥିଲା । କିନ୍ତୁ ବାଳକ ମଧୁସୂଦନ ଥିଲେ ନିର୍ଭୀକ ତଥା ଦୁଃସାହସିକତାର ଏକ ମୂର୍ତ୍ତିମନ୍ତ ପ୍ରତୀକ ।

ତା'ପର ଦିନ ସେ ଯାଇ ମି.ହିଲିଙ୍କ ବାସଭବନରେ ପହଞ୍ଚିଲେ । ଏ ବିଷୟ ସେ ତାଙ୍କ ଅସମ୍ପୂର୍ଣ୍ଣ ଆତ୍ମଜୀବନୀରେ ଅତି ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି-

" ପରଦିନ ଅତି ସକାଳୁ ମୁଁ ଓଡ଼ିଶୀ ପୋଷାକ ପିନ୍ଧି ସେହି ସାହେବଙ୍କ ବଙ୍ଗଳାକୁ ଗଲି । ମୁଁ କୋଠି ବାରଣ୍ଡାରେ ଟେବୁଲ ଉପରେ ପଡିଥିବା ଧଳା ଲିନେନ୍‌ରେ ଥୁଆ ହୋଇଥିବା ପିଆଲା, ଥାଳିଆ ପ୍ରଭୃତି ଦେଖିଲି । ମୁଁ ସେହି ପିଣ୍ଡା ତଳେ ସାହେବଙ୍କ ଆସିବା ପର୍ଯ୍ୟନ୍ତ ଦେଖା କରିବା ପାଇଁ ଛିଡ଼ା ହେଇ ରହିଲି ।"

ଅବଶେଷରେ ହିଲି ସାହେବ ପଦାକୁ ଆସିଲେ । ବାଳକ ମଧୁସୂଦନଙ୍କୁ ଦେଖି ପାଖକୁ ଡାକିଲେ ଓ ତାଙ୍କ ସହ ଓଡ଼ିଆରେ କଥା ହେଲେ । ସେ ତାଙ୍କ ଠାରୁ କ'ଣ ଚାହାନ୍ତି ବୋଲି ପଚାରିଲେ । ମଧୁସୂଦନ ଶ୍ରେଣୀଗୃହର ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ । ଯେଉଁ ଅନୁଚ୍ଛେଦଟି ହେଡମାଷ୍ଟର ପଢ଼ାଉଥିଲେ ତାହା ଦେଖାଇଲେ ଓ କିପରି ଭୁଲ ପଢ଼ାଉଛନ୍ତି ତାହାର ବର୍ଣ୍ଣନା କଲେ । ସେହି ଅନୁଚ୍ଛେଦଟିକୁ ସେ କେମିତି ବୁଝିଛନ୍ତି ସେକଥା ମଧ୍ୟ ଦର୍ଶାଇଲେ । ସବୁକଥା ଶୁଣି ମି.ହିଲି ଟିକିଏ ହସିଦେଲେ ଓ ତା' ପରଦିନ ଏଗାରଟା ବେଳକୁ ସ୍କୁଲକୁ ଆସିବା ପାଇଁ ତାଙ୍କୁ କୋମଳ କଣ୍ଠରେ ନିର୍ଦ୍ଦେଶ ଦେଲେ ।

ବାଳକ ମଧୁସୂଦନ ତାହା ହିଁ କଲେ । ତହିଁ ଆରଦିନ ନିର୍ଦ୍ଦିଷ୍ଟ ସମୟର କିଛି କ୍ଷଣ ଆଗରୁ ସେ ଯାଇ ସ୍କୁଲ ଫାଟକ ନିକଟରେ ହାଜର ହୋଇଗଲେ । ମି.ହିଲି ମଧ ଠିକ୍ ସମୟରେ ଆସି ପହଞ୍ଚିଲେ । ମଧୁସୂଦନଙ୍କ ଭାଷାରେ- "ସେ ଯେତେବେଳେ ମୋ ପାଖ ଦେଇ ତାଙ୍କ ବଗିରେ ଗଲେ ମୁଁ ତାଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କଲି ।"

ଏହାପରେ ହେଡ୍‌ମାଷ୍ଟର ଓ ମି. ହିଲିଙ୍କ ମଧରେ ବେଶ୍ କିଛି ସମୟ ଧରି କଥାବାର୍ତ୍ତା ଚାଲିଲା । ସେହି କଥାବାର୍ତ୍ତାକୁ ଜାଣିବା ପାଇଁ ମଧୁସୂଦନ ଅନେକ ଚେଷ୍ଟାକଲେ ମଧ ସେଥିରେ ସଫଳ ହୋଇ ନ ଥିଲେ । ଶେଷରେ ହିଲି ଫେରିଗଲେ ଓ ହେଡ୍‌ମାଷ୍ଟର ତାଙ୍କୁ ଡକେଇ ପଠେଇ କହିଲେ ଯେ ସେ ତାଙ୍କୁ କ୍ଷମା କରିଦେଇଛନ୍ତି ଓ ପୁଣି ଥରେ ସ୍କୁଲକୁ ନେବା ପାଇଁ ସ୍ଥିର କରିଛନ୍ତି ।

ମଧୁସୂଦନଙ୍କ ଛାତ୍ର ଜୀବନ ପୁଣିଥରେ ବ୍ୟବସ୍ଥିତ ହୋଇଗଲା ଏବଂ ସେ ପୂର୍ବପରି ପାଠ ପଢ଼ିବା ପାଇଁ ସ୍କୁଲକୁ ଆସିଲେ । ଏହି ଘଟଣା ପରେ ମଧୁସୂଦନ ସତକୁସତ ସ୍କୁଲ୍ ପିଲାଙ୍କ ମଧରେ ଆଦରର ପାତ୍ର ହୋଇଗଲେ । ଯେଉଁ ବଙ୍ଗାଳୀ ଛାତ୍ରମାନେ ତାଙ୍କୁ ଥଟ୍ଟା ପରିହାସ କରି ହେୟ ମଣୁଥିଲେ ସେମାନେ ତାଙ୍କୁ ଭଲ ପାଇଲେ । ଏହିପରି ଭାବରେ ମଧୁସୂଦନ ୧୮୬୪ ମସିହାରେ ୧୬ ବର୍ଷ ବୟସରେ କଟକ ଜିଲ୍ଲା ସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେହିବର୍ଷ ସେହି ସ୍କୁଲରୁ ମାତ୍ର ୫ ଜଣ ଛାତ୍ର ଏଣ୍ଟ୍ରାନ୍ସ ପରୀକ୍ଷାରେ ପାସ୍ କରିଥିଲେ ।

କଟକରେ ଥିବା ବେଳେ ମଧୁସୂଦନ କିଛି ଦିନ ପାଇଁ କର୍ମବୀର ଗୌରୀଶଙ୍କରଙ୍କ ସଂସ୍ପର୍ଶରେ ଆସିଥିଲେ ଏବଂ ତାଙ୍କର ଛାତ୍ର ହେବାର ସୁଯୋଗ ପାଇଥିଲେ । ଏକଥା ସେ ୧୯୧୯ ମସିହାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ଏକ ବୈଠକରେ କହିଥିଲେ ଯେ ତାଙ୍କଠାରୁ ମୁଁ ଚାରି-ପାଞ୍ଚଦିନ ଶିକ୍ଷା ଗ୍ରହଣ କରିଅଛି ।' ମଧୁସୂଦନ ମଧ ଶେଷ ପର୍ଯ୍ୟନ୍ତ ଗୌରୀଶଙ୍କରଙ୍କୁ 'ମାଷ୍ଟର' ବୋଲି ସମ୍ବୋଧନ କରୁଥିଲେ ।

# କଲିକତା ଯିବାର ପ୍ରବଳ ଇଚ୍ଛା

ମଧୁସୂଦନ କୃତିତ୍ୱର ସହ ଏଣ୍ଟ୍ରାନ୍ସ ପାସ୍ କଲେ । ସେତେବେଳର ଏଣ୍ଟ୍ରାନ୍ସ ହେଉଛି ଏବର ମାଟ୍ରିକ୍ୟୁଲେସନ୍ । ସେତେବେଳେ ମାଟ୍ରିକ୍ ପାସ୍ କରିବା କିଛି କମ୍ କଥା ନ ଥିଲା । ମାଟ୍ରିକ୍ ପାସ କରିବା ମାତ୍ରେ ତୁମ ନିକଟରେ ଚାକିରି ଥୁଆ । ମଧୁସୂଦନ ଚାହିଁଥିଲେ ତାଙ୍କ ପାଇଁ ଚାକିରି ଖଣ୍ଡିଏ ସହଜରେ ପାଇ ପାରିଥାନ୍ତେ । ବାପା ଚୌଧୂରୀ ରଘୁନାଥ ଦାସଙ୍କର ମଧ ସେଇଆ ଇଚ୍ଛା ଥିଲା । କିନ୍ତୁ ମଧୁସୂଦନଙ୍କ ଜୀବନର ଅଭିଳାଷ ଥିଲା ଅଲଗା । ସେ ଏଣ୍ଟ୍ରାନ୍ସ ପଢ଼ାରେ ସନ୍ତୁଷ୍ଟ ନ ହୋଇ ସର୍ବୋଚ୍ଚ ଇଂରାଜୀ ଶିକ୍ଷା ହାସଲ କରିବାର ସ୍ୱପ୍ନ ଦେଖୁଥିଲେ । କାରଣ ସେ ସେତେବେଳକୁ ଭଲ ଭାବରେ ବୁଝି ସାରିଥିଲେ ଯେ, ଓଡ଼ିଶାକୁ କେବଳ ରାଜନୈତିକ ଆଉ ଆର୍ଥିକ ଦିଗରୁ ନୁହେଁ; ଅଧିକନ୍ତୁ ଶିକ୍ଷା ଓ ସଂସ୍କୃତି ଦିଗରୁ ମଧ ସବୁଦିନ ପାଇଁ ତଳିତଳାନ୍ତ କରିଦେବାକୁ ଧୂର୍ତ୍ତ ଇଂରେଜମାନେ ଚକ୍ରାନ୍ତ ଚଳାଇଛନ୍ତି । ଆଉ ପଡୋଶୀ ବଙ୍ଗାଳୀମାନେ ଏହି କାର୍ଯ୍ୟରେ ସେମାନଙ୍କୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରି ଆସୁଛନ୍ତି ।

୧୮୪୪ ମସିହା ବେଳକୁ ସବୁ ସରକାରୀ ଅଫିସ୍‌ରେ ଇଂରାଜୀ ଭାଷାର ପ୍ରଚଳନ ହେବ ବୋଲି ନିୟମ କଡ଼ାକଡ଼ି କରାଯାଇଥିଲା । କିନ୍ତୁ ଏପଟେ ଇଂରାଜୀ ଶିକ୍ଷା ପାଇଁ ଓଡ଼ିଶାରେ ଗୋଟିଏ ବି କଲେଜ ଖୋଲା ଯାଇ ନ ଥାଏ । ଯେଉଁମାନେ ଇଂରାଜୀ ପଢ଼ିବାକୁ ମନ ବଳାଉଥିଲେ, ସେମାନଙ୍କୁ କଲିକତା ଯିବା ପାଇଁ ପଡୁଥିଲା । କିନ୍ତୁ କଲିକତା ଯିବା ସହଜ ନ ଥିଲା । କେବଳ ପଇସାବାଲା ଲୋକେ ହିଁ ଭଦ୍ରକର ଚାନ୍ଦବାଲି ବନ୍ଦରରୁ ଷ୍ଟିମର ଯୋଗେ କଲିକତା ଯାଇ ପାରୁଥିଲେ ।

ପୁଅକୁ ଇଂରାଜୀ ପଢ଼ାଇବା ପାଇଁ ଷ୍ଟିମର୍‌ରେ ବସେଇ କଲିକତା ପଠେଇବା ଭଳି ଅବସ୍ଥା ଚୌଧୂରୀ ରଘୁନାଥ ଦାସଙ୍କର ନ ଥିଲା । ପୁଣି କଲିକତାରେ ରହି ପାଠ ପଢ଼ିବା ବି ଖୁବ୍ ବ୍ୟୟସାପେକ୍ଷ ଥିଲା । ଓଡ଼ିଆ ଭାଷାର ପ୍ରଥମ ସମ୍ବାଦପତ୍ର 'ଉତ୍କଳ ଦୀପିକା'ର ସମ୍ପାଦକ ଗୌରୀଶଙ୍କରଙ୍କ ଅବସ୍ଥା ମଧ ଠିକ୍ ସେଇଆ ହୋଇଥିଲା । ସେ ତାଙ୍କର ଛାତ୍ରାବସ୍ଥାରେ ଉଚ୍ଚଶିକ୍ଷା ଆଶାରେ କିଛି ବର୍ଷ ପୂର୍ବେ ପାଦରେ ଚାଲିଚାଲି ଯାଇ ଏକୋଇଶ ଦିନ ପରେ କଲିକତାରେ ପହଞ୍ଚିଥିଲେ । ମାତ୍ର ତାଙ୍କ ପିତା ରହିବା, ଖାଇବା ଓ ପଢ଼ିବା ଖର୍ଚ୍ଚ ତୁଲେଇ ନ ପାରିବା ହେତୁ ଗୌରୀଶଙ୍କର ନିରାଶ ହୋଇ କଲିକତାରୁ ଫେରି ଆସିଥିଲେ । ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର

ଜନକ କବିବର ରାଧାନାଥ ରାୟବାହାଦୂର ମଧ୍ୟ ସେଇ ସମାନ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ଏସବୁ ବିଷୟ ସେତେବେଳେ ଲୋକମାନଙ୍କ ମୁହଁରେ କାହାଣୀ ଭଳି ପ୍ରଚାରିତ ହୋଇ ଯାଇଥିଲା । ତେଣୁ ମଧୁସୂଦନଙ୍କ ବାପା ପୁଅକୁ ଇଂରାଜୀ ପଢ଼ାଇବା କଥା ଭାବି ପାରୁ ନ ଥିଲେ । ଓଲଟି ସେ ଦିନେ ତାଙ୍କ ଏଣ୍ଟ୍ରାନ୍ସ ପାସ କରା ପୁଅକୁ ପାଖକୁ ଡାକି କଟକରେ ରହି ଚାକିରି ଖୋଜିବା ଲାଗି ପରାମର୍ଶ ଦେଲେ । ସେ ଭଲ ଭାବରେ ଜାଣିଥିଲେ ଯେ ମଧୁସୂଦନ ଚେଷ୍ଟା କଲେ ତାଙ୍କୁ ଯେକୌଣସି ସରକାରୀ ଅଫିସ୍‌ରେ କିରାଣୀ ଚାକିରିଟିଏ ମିଳିଯିବ ଆଉ ହାକିମଙ୍କ ମନ ନେଇ କାମ କଲେ ବର୍ଷ କେଇଟାରେ ସେ ଡେପୁଟି କଲେକ୍ଟର ହୋଇ ପାରିବେ । ହେଲେ ମଧୁସୂଦନଙ୍କ ମନର କଥା ସମ୍ପୂର୍ଣ୍ଣ ଅଲଗା ଥିଲା । ସେ କଣ୍ଟାକୁ କଣ୍ଟାରେ କାଢ଼ିବା ପାଇଁ ଚାହୁଁଥିଲେ । ଅର୍ଥାତ୍ ଇଂରାଜୀ ଶିକ୍ଷା ଲାଭ କରି ଇଂରେଜମାନଙ୍କର କୂଟ ଚକ୍ରାନ୍ତକୁ ପଣ୍ଡ କରିବା ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା -ସପ୍ନ ବି ଥିଲା !

## ବାଲେଶ୍ୱରରେ ଚାକିରି ଓ କଲିକତା ଯାତ୍ରା

ମଧୁସୂଦନଙ୍କର କଲିକତା ଯିବା ନେଇ ଅର୍ଥ ଥିଲା ପ୍ରଥମ ଓ ପ୍ରଧାନ ପ୍ରତିବନ୍ଧକ ସେହି କାରଣରୁ ଚୌଧୁରୀ ରଘୁନାଥ ଦାସ ତାଙ୍କୁ କଲିକତା ପଠାଇବା ପାଇଁ ଅମଙ୍ଗ ଥିଲେ । କଲିକତାରେ ଯାଇ ଉଚ୍ଚ ଇଂରାଜୀ ଶିକ୍ଷା ହାସଲ କରିବା ନେଇ ମଧୁସୂଦନଙ୍କ ଭିତରେ ପ୍ରବଳ ଜିଦ୍ ଥିଲା । କୁହାଯାଏ, ଇଚ୍ଛା ଥିଲେ ଉପାୟ ବଳେ ବଳେ ଆସି ପହଞ୍ଚେ । ସେଇଭଳି ମଧୁସୂଦନ କଲିକତା ଯିବାର ଖର୍ଚ୍ଚ ନିଜେ ଯୋଗାଡ଼ କରିବାକୁ ଲାଗିପଡିଲେ । ସେଥିପାଇଁ ସେ ବାଲେଶ୍ୱର ଚାଲିଗଲେ ଓ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା କଲେ ।

ସେତେବେଳେ ବାଲେଶ୍ୱର ବାଣିଜ୍ୟ ବ୍ୟବସାୟର ଏକ ପ୍ରମୁଖ ପେଣ୍ଠସ୍ଥଳୀ ଥିଲା । ଏଠାରେ ଶିକ୍ଷକତା କରିବା ଅବସରରେ ତାଙ୍କର ବ୍ୟାସକବି ଫକୀର ମୋହନ ସେନାପତି ଓ ବାହାଦୂର ରାଧାନାଥ ରାୟଙ୍କ ସହିତ ସାକ୍ଷାତ ଓ ସମ୍ପର୍କ ଗଢ଼ିଉଠିଥିଲା । ସତେ ଯେମିତି ଏହି ମିଳନ ସତନ୍ତ୍ର ଓଡ଼ିଶା ଆନ୍ଦୋଳନର ଏକ ତ୍ରିବେଣୀ ସଙ୍ଗମ ଥିଲା । ଏ ସମ୍ପର୍କରେ ସୂଚନା ଦେଇ ଫକୀର ମୋହନ ସେନାପତି ନିଜର ଆତ୍ମଜୀବନୀରେ ଲେଖିଛନ୍ତି- " ବାବୁ ମଧୁସୂଦନ ଦାସ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଥାର୍ଡ ମାଷ୍ଟର (ତୃତୀୟ ଶିକ୍ଷକ) ଥିଲେ । ତାଙ୍କର ବସା ମଧ୍ୟ ଗଡ଼ଗଡ଼ିଆ ସମୀପରେ ଥିଲା ।"

ଅନେକ ସମୟରେ ଫକୀର ମୋହନ, ରାଧାନାଥ ଏବଂ ମଧୁସୂଦନଙ୍କ ମଧ୍ୟରେ ସାକ୍ଷାତ ଓ ଆଲୋଚନା ହେଉଥିଲା । ଫକୀର ମୋହନଙ୍କ ଭାଷାରେ- "ଗ୍ରୀଷ୍ମକାଳରେ ଆମ୍ଭେମାନେ ପ୍ରାୟ ପ୍ରତିଦିନ ପରସ୍ପର କଥୋପକଥନ ଓ ବାୟୁ ସେବନ ନମନ୍ତେ ଉକ୍ତ ପୁଷ୍କରିଣୀର ପକ୍‌କା ଘାଟରେ ଏକତ୍ରିତ ହେଉଥିଲୁ । ସେହି ତରୁଣ ବୟସରେ ମଧ ତାଙ୍କର ଉଚ୍ଚାକାଙ୍‌କ୍ଷା ବିଷୟ ଶୁଣି ଆମ୍ଭେମାନେ ସ୍ତମ୍ଭୀଭୂତ ହୋଇ ଯାଉଥିଲୁ ।"

ଏହିସବୁ ଘଟଣାରୁ ଏକଥା ଅତି ସହଜରେ ଅନୁମାନ କରାଯାଇ ପାରିବ ଯେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ତୃତୀୟ ଶିକ୍ଷକ ଭାବରେ କାର୍ଯ୍ୟ କରିବା ପଛରେ ମଧୁସୂଦନଙ୍କର ଗୋଟିଏ ଲକ୍ଷ୍ୟ ଥିଲା, ଆଉ ତାହା ହେଉଛି କିଛି ପଇସା ଯୋଗାଡ଼ କରିବା ଓ କଲିକତା ଯାଇ ସେଠାରେ ଉଚ୍ଚତର ଇଂରାଜୀ ପଢ଼ି ସେଥିରେ ପାରଦର୍ଶିତା ହାସଲ କରିବା । ଏତଦ୍‌ବ୍ୟତୀତ ଓଡ଼ିଶାର ସର୍ବପ୍ରଥମ ଗ୍ରାଜୁଏଟ ହେବା ପାଇଁ ତାଙ୍କ ମନରେ ମୂଳରୁ ଗୋଟାଏ ପ୍ରବଳ ଆକାଙ୍‌କ୍ଷା ଘନୀଭୂତ ହୋଇଥିଲା । ସେଥିପାଇଁ ସେ ଶିକ୍ଷକତା ଛାଡ଼ି କିଛିଦିନ ଏକ ରେଜିଷ୍ଟ୍ରେସନ୍ ଅଫିସ୍‌ରେ କିରାଣୀ ଭାବରେ କାର୍ଯ୍ୟ କରିଥିଲେ ।

ସତକୁସତ କିଛିଦିନ ବାଲେଶ୍ୱରରେ ଶିକ୍ଷକତା କରିବା ପରେ ସେ କଲିକତା ଯିବା ଲାଗି ନିଜକୁ ପ୍ରସ୍ତୁତ କରିନେଲେ । ହାତକୁ କିଛି ଟଙ୍କା ଆସିଗଲା । ସେ ଆସି ଭଦ୍ରକର ଚାନ୍ଦବାଲି ବନ୍ଦରରେ ପହଞ୍ଚିଗଲେ ଆଉ କଲିକତା ଯାଉଥିବା ଏକ ଷ୍ଟିମରରେ ବସି ଦିନକ ପରେ ଯାଇ କଲିକତାରେ ପହଞ୍ଚିଗଲେ । ଏହା ପ୍ରାୟ ୧୮୬୬ ମସିହାର କଥା ।

## କଲିକତାରେ ମଧୁସୂଦନ

କଲିକତାରେ ଯାଇ ସେଠାରେ ଉଚ୍ଚଶିକ୍ଷା ଲାଭ କରିବା ମଧୁସୂଦନଙ୍କର ଏକ ସପ୍ନ ଥିଲା । ସେ ନିଜର ଅଧ୍ୟବସାୟ ବଳରେ ତାହା ପୂରଣ କଲେ । କଲିକତାରେ ପହଞ୍ଚି ସେଠା ହାଇକୋର୍ଟରେ କିରାଣୀ ଥିବା ନୀଳମାଧବ ଦାସ ନାମକ ଜଣେ ଓଡ଼ିଆ ଭଦ୍ରଲୋକଙ୍କ ଘରେ ରହିଲେ ଏବଂ ତାଙ୍କର ପିଲାମାନଙ୍କର ପଢ଼ାପଢ଼ିର ଦାୟିତ୍ୱ ମଧ ନେଲେ ।

କଲିକତାରେ ପହଞ୍ଚିବାର ଦିନ କେଇଟା ଭିତରେ ସେ ବୁଝି ପାରିଲେ ଯେ ସେଠାର ଓଡ଼ିଆଙ୍କୁ ଗୋଟିଏ 'କୁଲି' ଜାତି ବୋଲି ବିବେଚନା କରାଯାଉଛି । ସେଠାରେ

ଥିବା ଓଡ଼ିଆମାନେ ଅତି ଦୟନୀୟ ଜୀବନ ବିତାଉଛନ୍ତି । ଏସବୁ ବ୍ୟତୀତ ଯେଉଁ ଘଟଣାଟି ତରୁଣ ମଧୁସୂଦନଙ୍କୁ ବେଶୀ ଆଘାତ ଦେଇଥିଲା, ତାହା ହେଉଛି କଲିକତାରେ ରହି କୁଲିଗିରି କରୁଥିବା ଓଡ଼ିଆମାନେ ମଧ୍ୟ ନିଜକୁ ଓଡ଼ିଆ ବୋଲି ପରିଚୟ ଦେଉ ନ ଥିଲେ । ଏପରିକି ସେମାନେ ପରସ୍ପର ସହିତ ବଙ୍ଗଳା ଭାଷାରେ କଥାବାର୍ତ୍ତା ହେଉଥିଲେ ।

ଏଥିରୁ ଅନୁମାନ କରାଯାଇ ପାରିବ ଯେ, କଲିକତାରେ ରହି ପାଠ ପଢ଼ିବା ମଧୁସୂଦନଙ୍କ ପାଇଁ କିପରି ଏକ କଠିନ ପରୀକ୍ଷାର ସମୟ ଥିଲା । ଗୋଟିଏ ପଟରେ ଆର୍ଥିକ ଅନଟନ । ଅନ୍ୟପଟରେ ଭାଷାଗତ ସମସ୍ୟା । ବଙ୍ଗାଳୀମାନଙ୍କ ମଧ୍ୟରେ ଏତେ ଭାଷା ପ୍ରୀତି ଥିଲା ଯେ ସେମାନେ ସହଜରେ ଓଡ଼ିଆ ପିଲାଙ୍କୁ ଗ୍ରହଣ କରି ପାରୁ ନ ଥିଲେ । ଖାସ୍ ଏହି କାରଣରୁ ସେ ବଙ୍ଗଳା ଭାଷାରେ କଥା କହିବା ପାଇଁ ନିଷ୍ପତ୍ତି ନେଲେ ଏବଂ ବଙ୍ଗଳା କହିବାର ଅଭ୍ୟାସ ଆରମ୍ଭ କରିଦେଲେ ।

ଠିକ୍ ଏତିକିବେଳେ ଅର୍ଥାଭାବ ତାଙ୍କର ପଥ ଓଗାଳିବାକୁ ଲାଗିଲା । ଶିକ୍ଷକତା କରି ଯେଉଁ ପଇସା ସେ ଜମା କରିଥିଲେ ତାହା ଦିନ କେଇଟାରେ ଶେଷ ହୋଇଗଲା । ସେ ଆଉ ପଇସା ଆଣିବେ କେଉଁଠୁ, କଲେଜରେ ନାଁ ଲେଖେଇବେ କେମିତି ? ଏ ପ୍ରଶ୍ନ ତାଙ୍କୁ ବିଚଳିତ କରିବାକୁ ଲାଗିଲା । ବହୁ ସମୟରେ ତାଙ୍କୁ ଉପବାସ ରହିବାକୁ ପଡୁଥିଲା । ଦିନେଦିନେ ସେ ଦୁଇ ପଇସାର ମୁଢ଼ି ଖାଇ ଚଳେଇ ନଉଥିଲେ । ଏତେସବୁ ଦୁର୍ଦ୍ଦଶା ସତ୍ତ୍ୱେ ସେ ନିଜ ଭିତରର ଉଚ୍ଚାଭିଳାଷକୁ ଛାଡ଼ି ନ ଥିଲେ । ଧୈର୍ଯ୍ୟ ହରାଇ ନ ଥିଲେ । ସେ ଭାବୁଥିଲେ, ଯଦି ତାଙ୍କୁ ଫ୍ରି-ଷ୍ଟୁଡେଣ୍ଟ ଭାବରେ କୌଣସି କଲେଜ ଗ୍ରହଣ କରନ୍ତା ତା'ହେଲେ ଆଉ କିଛି ଅସୁବିଧା ରହନ୍ତା ନାହିଁ । ଅନେକ ଦିନ ଖୋଜାଖୋଜି କରିବା ପରେ ସେ କଲିକତାର ଭବାନୀପୁର ସ୍ଥିତ ଲଣ୍ଡନ ମିସନାରୀ ସୋସାଇଟି ପରିଚାଳିତ ବେଥୁନ୍ କଲେଜରେ ପହଞ୍ଚିଲେ । ରେଭରେଣ୍ଡ ଜେ.ପି.ଆଷ୍ଟନ୍ ସେହି କଲେଜର ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି । ମଧୁସୂଦନ ଯାଇ ତାଙ୍କୁ ଦେଖାକଲେ ଓ ନିଜ ଦୁରବସ୍ଥାର କାହାଣୀ ଶୁଣେଇଲେ ।

ଜଣେ ଉଚ୍ଚାକାଙ୍କ୍ଷୀ ତରୁଣର ଆଗ୍ରହ ତଥା ଅସୀମ ଧୈର୍ଯ୍ୟ ଆଷ୍ଟନ୍‌ଙ୍କୁ ପ୍ରଭାବିତ କଲା । ସେ ତାଙ୍କୁ କଲେଜରେ ଜଣେ ଫ୍ରି-ଷ୍ଟୁଡେଣ୍ଟ ଭାବରେ ଗ୍ରହଣ କଲେ । ପାଠପଢ଼ା ଖର୍ଚ୍ଚ ତୁଲାଇବା ପାଇଁ ମଧୁସୂଦନଙ୍କୁ ମାସିକ ସାତ ଟଙ୍କା ବୃତ୍ତି ମିଳିବାର ବନ୍ଦୋବସ୍ତ ମଧ୍ୟ କରିଦେଲେ ।

୧୮୬୬ ମସିହାରେ ଏଫ୍.ଏ. (ବର୍ତ୍ତମାନର ଆଇ.ଏ.) ଶ୍ରେଣୀରେ ନାମ ଲେଖାଇ ମଧୁସୂଦନ ଏହାର ଦୁଇବର୍ଷ ପରେ ଅର୍ଥାତ୍ ୧୮୬୮ ମସିହାରେ ଏଫ୍.ଏ. ପାସ୍ କଲେ ।

## ଖ୍ରୀଷ୍ଟଧର୍ମ ଗ୍ରହଣ

ଏଫ.ଏ. ପାସ କରିବାର ପର ବର୍ଷ ଅର୍ଥାତ୍ ୧୮୬୯ ମସିହାରେ ମଧୁସୂଦନ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ । ସେତେବେଳେ ମଧୁସୂଦନଙ୍କର ଧର୍ମ ପରିବର୍ତ୍ତନ ଘଟଣା ଓଡ଼ିଆଙ୍କ ପାଇଁ କୌଣସି ରୋମାଞ୍ଚକର କାହାଣୀଠୁ କିଛି କମ୍ ନ ଥିଲା ।

ମଧୁସୂଦନ ବେଥୁନ୍ କଲେଜର ଛାତ୍ରାବାସରେ ରହୁଥିବା ସମୟରେ ତାଙ୍କ ସାଙ୍ଗରେ ମେଦିନୀପୁରର ଅମ୍ବିକା ଚରଣ ହାଜରା ନାମକ ଅନ୍ୟଜଣେ ଛାତ୍ର ରହୁଥିଲେ । ଏହିଠାରେ ଡାକ୍ତର ଡଫ୍ଙ୍କ ସହିତ ତାଙ୍କର ପରିଚୟ ହେଲା ଓ ଆତ୍ମୀୟତା ବଢ଼ିଲା । ଏହି ଅବସରରେ ଅମ୍ବିକା ଚରଣ ହାଜରା ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହେଲେ ଓ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ । ମଧୁସୂଦନ ମଧ ତାଙ୍କରି ସଂସ୍ପର୍ଶରେ ଆସି ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ।

ଅପରପକ୍ଷରେ, ତାଙ୍କର ସାମଗ୍ରିକ ଜୀବନ, ବିଶେଷ କରି ଖ୍ରୀଷ୍ଟଧର୍ମ ଗ୍ରହଣ ଠାରୁ ଶେଷ ନିଃଶ୍ୱାସ ତ୍ୟାଗ କରିବା ଯାଏ ତାଙ୍କର ଜୀବନକୁ ଗଭୀର ଭାବରେ ଅନୁଶୀଳନ କଲେ ଏକଥା ସ୍ପଷ୍ଟ ହୋଇଯାଏ ଯେ, ସେ ନିଜ ଇଚ୍ଛା ଅନୁସାରେ କିମ୍ବା ଆତ୍ମ ପ୍ରେରଣାର ବଶବର୍ତ୍ତୀ ହୋଇ ଖ୍ରୀଷ୍ଟଧର୍ମ ଗ୍ରହଣ କରିନାହାନ୍ତି । ବରଂ ପରିସ୍ଥିତି, ପରିବେଶ ଓ ନିଜ ଭିତରର ଉଚ୍ଚାକାଙ୍କ୍ଷାକୁ ପୂରଣ କରିବାର ମନୋବୃତ୍ତି ନେଇ ସେ ଧର୍ମ ବଦଳାଇବାକୁ ନିଷ୍ପତ୍ତି ନେଇଛନ୍ତି ।

ଏ ବାବଦରେ କେତେଗୋଟି ତଥ୍ୟ ଏଠାରେ ଉପସ୍ଥାପନ କରାଯାଇପାରେ । ପ୍ରଥମତଃ, ମଧୁସୂଦନ ଏକ ମିଶନାରୀ ଆସୋସିଏସନ୍ର ସହାୟତାରେ କଲିକତାରେ ପାଠ ପଢୁଥିଲେ । ସେହି ଆସୋସିଏସନ ପକ୍ଷରୁ ତାଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ଲାଗି ଚାପ ପ୍ରୟୋଗ କରାଯାଇ ପାରିଥାଏ । ଅନ୍ୟପକ୍ଷରେ, କଲିକତାରେ 'ୟଙ୍ଗ୍ ବେଙ୍ଗଲ' ନାମରେ ଗୋଟିଏ ଗୋଷ୍ଠୀ ସେତେବେଳେ ଖ୍ରୀଷ୍ଟଧର୍ମ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇ ପଡିଥିଲା । ହିନ୍ଦୁଧର୍ମର କଠୋର ଅନୁଶାସନ, ପରମ୍ପରା ଓ ପର୍ବପର୍ବାଣୀରେ

ବିରକ୍ତି ପ୍ରକାଶ କରି ସେମାନେ ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିଲେ ଓ କରାଉଥିଲେ । ପ୍ରଗତି-ମନୋଭାବ-ସମ୍ପନ୍ନ ମଧୁସୂଦନଙ୍କ ତରୁଣ ହୃଦୟରେ ହିନ୍ଦୁଧର୍ମ ପ୍ରତି ବିଦ୍ରୋହ ସୃଷ୍ଟି ହୋଇଥିବା ସ୍ୱାଭାବିକ ଏବଂ ସେ ଖ୍ରୀଷ୍ଟଧର୍ମ ଆଡ଼କୁ ଢ଼ଳି ପଡିଥିବା କିଛି ଆଶ୍ଚର୍ଯ୍ୟର କଥା ନୁହେଁ ।

ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ସ୍ଥିର କଲେ ଓ ବାଇବେଲ କ୍ଲାସ୍‌ରେ ତାଙ୍କୁ ବସିବା ପାଇଁ ଅନୁମତି ମିଳୁ ବୋଲି ରେଭରେଣ୍ଡ ଆଷ୍ଟନ୍‌ଙ୍କୁ ପତ୍ର ଲେଖିଲେ । ମାତ୍ର ରେଭରେଣ୍ଡ ଆଷ୍ଟନଙ୍କ ଠାରୁ ଅନୁମତି ପାଇବା ଏତେଟା ସରଳ ବ୍ୟାପାର ନ ଥିଲା । ଧର୍ମ ପରିବର୍ତ୍ତନ କରିବା ଲାଗି ସେ ତାଙ୍କ ପିତାଙ୍କ ଠାରୁ ଅନୁମତି ଆଣିବା ଦରକାର । ଯଦି ପିତା ଅନୁମତି ନ ଦିଅନ୍ତି ତା'ହେଲେ ତାଙ୍କର ବ୍ୟକ୍ତିଗତ ଅନୁରୋଧକୁ ରକ୍ଷା କରା ଯାଇ ପାରିବ ନାହିଁ ବୋଲି ଆଷ୍ଟନ୍ ମଧୁସୂଦନଙ୍କୁ ଖୋଲାଖୋଲି ଭାବରେ ଜଣାଇ ଦେଲେ ।

ସତ୍ୟଭାମାପୁରର ଚୌଧୁରୀ ପରିବାର ଗୋଟିଏ ରକ୍ଷଣଶୀଳ ହିନ୍ଦୁ ପରିବାର ଥିଲା । ଆଉ ହିନ୍ଦୁମାନଙ୍କ ଦୃଷ୍ଟିରେ ସେତେବେଳେ ଖ୍ରୀଷ୍ଟିଆନ୍‌ମାନେ ଅସ୍ପୃଶ୍ୟ ଓ ବିଧର୍ମୀ ଥିଲେ । ତେବେ ଏଭଳି ଏକ ପରିବାରରେ ଜନ୍ମ ହୋଇ ଅତି ସଂସ୍କାରର ସହିତ ଲାଳିତ ପାଳିତ ହୋଇଥିବା ଜଣେ ତରୁଣ ଯେ ଖ୍ରୀଷ୍ଟିଆନ୍ ହେବା ଲାଗି ଅଡ଼ି ବସିବ ଏକଥା କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ପୁଅର ଏଭଳି କଥା ଶୁଣି ବାପା ରଘୁନାଥ ଦାସ ମର୍ମାହତ ହୋଇଗଲେ । ସେ ତାଙ୍କୁ ଫେରେଇ ଆଣିବା ପାଇଁ ତୁରନ୍ତ କଲିକାରେ ଆସି ପହଞ୍ଚିଲେ ଏବଂ ରୋକ୍‌ଠୋକ୍ କହିଦେଲେ ଯେ ଯଦି ସେ ତାଙ୍କ ସହିତ କଟକ ଫେରି ନ ଯାଆନ୍ତି ତା'ହେଲେ ସେ ତାଙ୍କୁ ତ୍ୟାଜ୍ୟପୁତ୍ର କରିଦେବେ ଓ ଉତ୍ତରାଧିକାରରୁ ମଧ ବଞ୍ଚିତ କରିବେ । ହେଲେ ନିଜ ନିଷ୍ପତ୍ତିରେ ମଧୁସୂଦନ ଅଟଳ ଥିଲେ । ପିତାଙ୍କର କ୍ରୋଧ, ବିରକ୍ତି ଓ ତ୍ୟାଜ୍ୟପୁତ୍ର କରିବାର ଚେତାବନୀ ତାଙ୍କୁ ଟିକିଏ ବି ବିଚଳିତ କରି ପାରି ନ ଥିଲା । ସେ ନିଜ ଜିଦ୍‌ରେ ଅଟଳ ହୋଇ ରହିଥିଲେ । ଶେଷରେ ମଧୁସୂଦନଙ୍କୁ ତ୍ୟାଜ୍ୟପୁତ୍ର ଘୋଷଣା କରି ଚୌଧୁରୀ ରଘୁନାଥ ଦାସ ଉଦାସ ମନରେ କଟକ ଫେରି ଆସିଲେ ।

# ପ୍ରଥମ ଓଡ଼ିଆ ଗ୍ରାଜୁଏଟ ଓ ବିବାହ

ପିତାଙ୍କ ଦ୍ୱାରା ତ୍ୟାଜ୍ୟପୁତ୍ର ହେବା ଯୋଗୁ ତାଙ୍କ ମନରେ ସାମାନ୍ୟତମ ଅଭିମାନ ନ ଥିଲା କମ୍ୱା ଜନ୍ମଜାତ ହିନ୍ଦୁଧର୍ମ ଛାଡ଼ି ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ହେତୁ ତାଙ୍କ ଭିତରେ ଅନୁତାପ ନ ଥିଲା । ଓଲଟି ସେ ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ନେଇ ନିଜ ପାଠପଢ଼ାରେ ମନୋନିବେଶ କଲେ ।

ବି.ଏ. ପଢୁଥିବା ବେଳେ ତାଙ୍କ ଭିତରେ ଥିବା ପ୍ରତିଭାର ପୂର୍ଣ୍ଣ ପରିପ୍ରକାଶ ଘଟିଥିଲା । ଛାତ୍ରମାନଙ୍କ ମହଲରେ ସେ ଜଣେ ଅତି ମେଧା ସମ୍ପନ୍ନ ସହପାଠୀ ଭାବରେ ପରିଗଣିତ ହେଉଥିଲେ । ତାଙ୍କର ବକ୍ତୃତା ଦେବାର ଶୈଳୀ ଅତି ଚମତ୍କାର ଥିଲା । ସେ ଆନ୍ତଃ କଲେଜ ପ୍ରତିଯୋଗିତା ମାନଙ୍କରେ ଅଂଶ ଗ୍ରହଣ କରି ବେଶ୍ ସଫଳତା ପାଇ ପାରିଥିଲେ । ତର୍କରେ ଅଂଶ ଗ୍ରହଣ କରି ଯେଉଁଭଳି ଭାବରେ ଯୁକ୍ତି ଉପସ୍ଥାପନ କରୁଥିଲେ ତାହା ବିଚାରକମାନଙ୍କ ମଧ୍ୟରେ ବିସ୍ମୟ ସୃଷ୍ଟି କରୁଥିଲା ।

ବାପାଙ୍କ ତ୍ୟାଜ୍ୟପୁତ୍ର ଘୋଷଣା ପରେ ମଧୁସୂଦନ ପ୍ରତିଜ୍ଞା କରିଥିଲେ ଯେ ସେ ବି.ଏ. ପାସ୍ ନ କରିବା ଯାଏ କଟକକୁ କିମ୍ବା ଘରକୁ ଫେରିବେ ନାହିଁ । ବାସ୍ତବରେ ସେ ତାହା ହିଁ କଲେ । ୧୮୭୦ ମସିହାରେ ଓଡ଼ିଶାର ପ୍ରଥମ ବ୍ୟକ୍ତି ଭାବରେ ସେ ବି.ଏ. ପାସ୍ କରି 'ପ୍ରଥମ ଓଡ଼ିଆ ଗ୍ରାଜୁଏଟ' ହେବାର ବିରଳ ସମ୍ମାନର ଅଧିକାରୀ ହୋଇ ପାରିଲେ । ଏହି ସାଫଲ୍ୟ ଅର୍ଜନ କରିବା ପରେ ସେ ଘରକୁ ଫେରି ଆସିଲେ; କିନ୍ତୁ ଖ୍ରୀଷ୍ଟିଆନ୍ ହୋଇ ଥିବାରୁ ତାଙ୍କୁ ଘରକୁ ପଶିବା ପାଇଁ ଅନୁମତି ମିଳିଲା ନାହିଁ । ତେବେ ମା' ପାର୍ବତୀ ଦେଈଙ୍କ ସ୍ନେହ, ଶ୍ରଦ୍ଧା, ମମତା ତାଙ୍କ ପ୍ରତି ପୂର୍ବପରି ଅତୁଟ ରହିଥିଲା । ସେଥିଲାଗି ସମସ୍ତେ ଜାତି ଚାଲିଯିବା ଭୟରେ ମଧୁସୂଦନଙ୍କ ଠାରୁ ଦୂରେଇ ରହିଲେ ମଧ୍ୟ ପାର୍ବତୀ ଦେବୀ ତାହା କରି ପାରି ନ ଥିଲେ । ସେ ଅବଶ୍ୟ ନିଜ ଗ୍ରାଜୁଏଟ ପଢ଼ା ପୁଅକୁ ଘର ଭିତରକୁ ଡାକି ପାରି ନ ଥିଲେ । କିନ୍ତୁ ଅନେକ ସମୟରେ ତାଙ୍କର ପାଖେ ପାଖେ ରହିଥିଲେ । ନିଜ ଦୁଃଖକୁ ଛାତିରେ ଚାପି ରଖି ମଧୁସୂଦନଙ୍କୁ ଦାଣ୍ଡ ପିଣ୍ଡାରେ ଅଛବ ପତିତ ମଣିଷ ପରି ବସେଇ କଦଳୀ ପତ୍ରରେ ଭାତ ପରଷି ଦେଉଥିଲେ । ଆଉ ମଧୁସୂଦନ ଖାଇ ସାରି ଯିବା ପରେ ଖୀରସ୍ତାନ ସ୍ପର୍ଶ ଦୋଷରୁ ଶୁଦ୍ଧ ହେବା ଲାଗି ଘରଦ୍ୱାରକୁ ଗୋବର ପାଣି ପକେଇ ଲିପୁଥିଲେ ଓ ନିଜେ ରସକୁଣ୍ଡ ପୋଖରୀରେ ବୁଡ଼ଟିଏ ପକେଇ ଲୁଗା ଧୋଇ ଘର ଭିତରକୁ ପଶୁଥିଲେ ।

# ଜାତିପ୍ରାଣ ମଧୁସୂଦନ

ଏମିତି କିଛି ଦିନ ଯିବା ପରେ ମଧୁସୂଦନ ମା'ଙ୍କ ଠାରୁ ବିଦାୟ ନେଇ ପୁଣିଥରେ କଲିକତା ଫେରିଗଲେ ।

କଲିକତାରେ ପହଞ୍ଚି ମଧୁସୂଦନ ପ୍ରଥମେ ଖ୍ରୀଷ୍ଟିଆନ୍ ମିଶନାରୀ ସୋସାଇଟି ହାଇସ୍କୁଲର ପ୍ରଧାନଶିକ୍ଷକ ହେଲେ । ସ୍କୁଲରୁ ସେ ମାସିକ ଅଶିଟଙ୍କା ଦରମା ପାଉଥିଲେ । ଏହି ଅର୍ଥରୁ କିଛି ଖର୍ଚ୍ଚ କରି ସହରରେ ରହୁଥିବା ସାଧାରଣ ଓଡ଼ିଆ ଲୋକଙ୍କର ଉନ୍ନତି ପାଇଁ କିଛି କରିବାକୁ ମନସ୍ଥ କଲେ । ପ୍ରଥମେ ସେ ଗୋଟିଏ ନୈଶ ବିଦ୍ୟାଳୟ ଆରମ୍ଭ କଲେ । ଏଥିପାଇଁ ତାଙ୍କୁ ମାସକୁ କୋଡ଼ିଏ ଟଙ୍କା ଖର୍ଚ୍ଚ କରିବାକୁ ପଡୁଥିଲା । ଏହି ଖର୍ଚ୍ଚ ଭରଣା କରିବା ପାଇଁ ସେ ଘରୋଇ ଶିକ୍ଷକ ଭାବରେ କାର୍ଯ୍ୟ କରି ଆଉ କିଛି ଅର୍ଥ ରୋଜଗାର କରୁଥିଲେ । ଏଥିସହିତ ନିଜର ଏମ୍.ଏ. ପଢ଼ା ମଧ ଜାରି ରଖିଥିଲେ । ୧୮୭୩ ମସିହାରେ ମଧୁସୂଦନ ଇଂରାଜୀ ଭାଷା ସାହିତ୍ୟରେ ଏମ୍.ଏ. ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ । ସେହି ବର୍ଷ ସେ ସୌଦାମିନୀ ନାମ୍ନୀ ଜଣେ ବଙ୍ଗୀୟ ଖ୍ରୀଷ୍ଟ ଧର୍ମାବଲମ୍ବୀ ତରୁଣୀଙ୍କୁ ବିବାହ କଲେ ।

ସୌଦାମିନୀ ଶିକ୍ଷିତା ଥିଲେ । କୁହାଯାଏ, କଲେଜରେ ପଢୁଥିବା ବେଳେ ମଧୁସୂଦନ ଓ ସୌଦାମିନୀଙ୍କ ମଧ୍ୟରେ ପ୍ରେମ ସମ୍ପର୍କ ଗଢ଼ି ଉଠିଥିଲା । ସୌଦାମିନୀ ମଧୁସୂଦନଙ୍କ ଠାରୁ ବୟସରେ ଗୋଟିଏ ବର୍ଷ ବଡ଼ ଥିଲେ । ବିବାହ ବେଳକୁ ମଧୁସୂଦନଙ୍କ ବୟସ ପଚିଶ ବର୍ଷ ହୋଇଥିବା ବେଳେ ସୌଦାମିନୀଙ୍କୁ ଛବିଶ ବର୍ଷ ହୋଇଥିଲା ।

ମଧୁସୂଦନ ଅତ୍ୟନ୍ତ ସରଳ ସଭାବର ଥିଲେ । ତେଣୁ ତାଙ୍କର ବିବାହ ମଧ ବିନା ଆଡ଼ମ୍ବରରେ ହୋଇଥିଲା । ବିବାହ ଦିନ ମଧୁସୂଦନ ସ୍କୁଲକୁ ପାଠ ପଢ଼େଇବା ପାଇଁ ଯାଇଥିଲେ ଓ ସ୍କୁଲରୁ ଫେରି ପୋଷାକ ନ ବଦଳେଇ ସିଧା ଗୀର୍ଜାକୁ ବିବାହ କରିବା ପାଇଁ ଗଲେ । ନିରାଡମ୍ବର ଭାବରେ ମଧୁସୂଦନଙ୍କର ବିବାହ ସମ୍ପନ୍ନ ହୋଇଥିଲା ।

ସେହି ସମୟରେ ଭାରତୀୟ ଛାତ୍ରମାନଙ୍କ ପାଇଁ ଗୋଟିଏ ହେଲେ ଭଲ ଇଂରାଜୀ ବ୍ୟାକରଣ ବହି ନ ଥିଲା । ଛାତ୍ରମାନେ ଇଂରାଜୀ ପଢ଼ିବା ନେଇ ନାନାଦି ସମସ୍ୟାର ସମ୍ମୁଖୀନ ହେଉଥିଲେ । ଏହାକୁ ଆଖି ଆଗରେ ରଖି ମଧୁସୂଦନ ଖଣ୍ଡିଏ ଇଂରାଜୀ ବ୍ୟାକରଣ ବହି ରଚନା କଲେ । ତାହାର ନାମ Model Questions and Answers । ପୁସ୍ତକଟି ୧୮୭୫ ମସିହାରେ ପ୍ରଥମଥର ପାଇଁ ପ୍ରକାଶିତ ହେଲା ଏବଂ ୧୮୮୪ ମସିହା ବେଳକୁ ଏହାର ଅଷ୍ଟମ ସଂସ୍କରଣ ପ୍ରକାଶିତ ହୋଇ

ସାରିଥିଲା । ପୁସ୍ତକଟି ସେତେବେଳେ ଏଣ୍ଟ୍ରାନ୍ସ ପରୀକ୍ଷା ଦଉଥିବା ଛାତ୍ରଙ୍କ ଲାଗି ଅତି ଉପାଦେୟ ହେଉଥିଲା । ତେଣୁ ସେହି ପୁସ୍ତକରୁ ମଧୁସୂଦନ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରି ପାରିଥିଲେ । କଲିକତାର ବଙ୍ଗାଳୀମାନେ ଏହି ବହିକୁ 'ମଧୁ ଉଡ଼େର' ବୋଲି କହୁଥିଲେ ।

## ଚାକିରି ସନ୍ଧାନ

ଗ୍ରାଜୁଏଟ ହେବାର ଆଶା ପୂରଣ ହୋଇଯିବା ପରେ ଏବଂ କୃତିତ୍ୱର ସହିତ ଇଂରାଜୀ ଭାଷାରେ ଏମ.ଏ. ପାସ କରିବା ପରେ ମଧୁସୂଦନଙ୍କ ଆଗରେ ଗୋଟିଏ ଲକ୍ଷ୍ୟ ଥିଲା- ସାଧାରଣ ଲୋକଙ୍କ ପାଇଁ କିଛି କରିବା । କିନ୍ତୁ ଏତିକି ବେଳେ ବାହାଘର ହୋଇଯିବାରୁ ତାଙ୍କ ଜୀବନର ମୋଡ଼ ବଦଳି ଗଲା । ସେ ପାରିବାରିକ ଜଞ୍ଜାଳରେ ଛନ୍ଦି ହୋଇ ପଡିଲେ । ନିଜ ପାଇଁ ରୋଜଗାର କରିବାକୁ ଚାକିରି ଯୋଗାଡ଼ରେ ମନୋନିବେଶ କଲେ ।

ପୂର୍ବରୁ ରେଭରେଣ୍ଡ ଆଷ୍ଟନ୍‌ଙ୍କ ସହିତ ତାଙ୍କର ସୁସମ୍ପର୍କ ଥିଲା । ରେଭରେଣ୍ଡ ସାହେବ ମଧୁସୂଦନଙ୍କର କଲିକତାରେ ରହିବା ଓ ପାଠ ବଢ଼ିବାର ବନ୍ଦୋବସ୍ତ କରିଦେଇଥିଲେ । ସେ ମଧୁସୂଦନଙ୍କର ଚରିତ୍ରବତ୍ତା, ଗୁଣାବଳୀ ଓ କର୍ମନିଷ୍ଠା ସମ୍ପର୍କରେ ବେଶ୍ ଅବଗତ ଥିଲେ । ତାଙ୍କୁ ଜଣେ ମିସନାରୀ କରିବା ପାଇଁ ସେ ବହୁ ପୂର୍ବରୁ ମନସ୍ଥ କରି ସାରିଥିଲେ ।

ମଧୁସୂଦନ ଏମ.ଏ. ପାସ କରି ଚାକିରି ସନ୍ଧାନ କରୁଥିବା ଜାଣି ରେଭରେଣ୍ଡ ଆଷ୍ଟନ୍ ତାଙ୍କୁ ତୁରନ୍ତ ନିଜ ପାଖକୁ ଡକାଇ ପଠାଇଲେ ଓ ନିଜର ମନକଥା ପ୍ରକାଶ କଲେ । ହେଲେ ଆଷ୍ଟନ୍‌ଙ୍କୁ ବିସ୍ମିତ କରିଦେଇ ମଧୁସୂଦନ କହିଲେ- "ସମାଜରେ ଦୁଇ ଶ୍ରେଣୀର ମିସନାରୀ ଅଛନ୍ତି ଫାଦର ! ଗୋଟିଏ ଶ୍ରେଣୀର ମିସନାରୀ ଆର୍ଥିକ ପ୍ରତ୍ୟାଶା ନ ରଖି ଯୀଶୁଙ୍କ ବାଣୀ ପ୍ରଚାର କରନ୍ତି । କିନ୍ତୁ ଦ୍ୱିତୀୟ ଶ୍ରେଣୀର ମିସନାରୀ ମୋଟା ଦରମା ନେଇ ସବୁପ୍ରକାର ସୁଖ ସାଚ୍ଛନ୍ଦ୍ୟ ବିନିମୟରେ ଖ୍ରୀଷ୍ଟଧର୍ମ ପ୍ରଚାରର ପ୍ରହସନ କରିଥାନ୍ତି । ପ୍ରଥମ ଶ୍ରେଣୀର ମିସନାରୀ ହେବାକୁ ମୋର ଆପତ୍ତି ନାହିଁ । ହେଲେ ଦୁଃଖର ସହିତ କହିବାକୁ ପଡୁଛି ଯେ ମୋର ବର୍ତ୍ତମାନର ପରିସ୍ଥିତି ମୋତେ ସେଥିଲାଗି ଅନୁମତି ଦେଉନାହିଁ ।" ଏହା ଶୁଣି ଆଷ୍ଟନ ଉତ୍ୟକ୍ତ ହୋଇ ଉଠିଲେ ଓ ଭର୍ତ୍ସନା କରି କହିଲେ- Get out you Satan - ଦୂର ହୁଅ ସଇତାନ୍ !

ମଧୁସୂଦନ ସେଠାରୁ ବିନମ୍ରତାର ସହିତ ଚାଲି ଆସିଲେ । ମାତ୍ର ଆସିବା ଆଗରୁ କହିଥିଲେ—"ଆଜି ଆପଣ ମୋତେ ତଡ଼ି ଦଉଛନ୍ତି; କିନ୍ତୁ ଦିନ ଆସିବ ମୋତେ ସମ୍ବର୍ଦ୍ଧନା ଦେବେ ।"

ଏହି ସମୟରେ ଶ୍ରୀରାମପୁର ମିସନାରୀ କଲେଜରେ ଗୋଟିଏ ଅଧ୍ୟାପକ ପଦବୀ ଖାଲି ପଡ଼ିଥାଏ ଓ ସେଥିଲାଗି ବିଜ୍ଞାପନ ବାହାରିଥାଏ । ମଧୁସୂଦନ ଏହା ଦେଖି ଖୁସି ହୋଇଗଲେ । କଲେଜର ପ୍ରିନ୍ସପାଲ ରେଭରେଣ୍ଡ ଲଙ୍ଗଙ୍କୁ ଯାଇ ସାକ୍ଷାତ କଲେ । ମଧୁସୂଦନଙ୍କ ଏମ.ଏ. ସାର୍ଟିଫିକେଟ ଦେଖି ସାରିବା ପରେ ଲଙ୍ଗ ତାଙ୍କୁ ପଚାରିଲେ, ସେ ସାଥୀରେ କୌଣସି ପରିଚୟ ପତ୍ର ଆଣିଛନ୍ତି କି ନା । ମଧୁସୂଦନ ବିନୀତ ହୋଇ ଉତ୍ତର ଦେଲେ—"ବିଜ୍ଞାପନରେ ଯଦି ଏ ବିଷୟ ଉଲ୍ଲେଖ ଥାଆନ୍ତା ତା'ହେଲେ ମୁଁ ନିଜ ସହିତ ଝୁଡ଼ିଏ କି ଦି'ଝୁଡ଼ି ପରିଚୟ ପତ୍ର ଆଣି ଆସିଥାନ୍ତି । ହେଲେ ତାହା ସେଥିଲେ ଉଲ୍ଲେଖ ନ ଥିଲା । ତେବେ ମୁଁ ଏକଥା ଜାଣିଛି ଯେ, ମୁଁ ନିଜେ ହେଉଛି ନିଜର ପରିଚୟ ପତ୍ର ବା ଇଣ୍ଟ୍ରୋଡକ୍ସନ୍ ଲେଟର । ଯଦି ଆପଣ ଚାହାନ୍ତି ତା'ହେଲେ ମୋତେ ବର୍ତ୍ତମାନ ପରୀକ୍ଷା କରି ଦେଖିପାରନ୍ତି ।"

ପ୍ରିନ୍ସପାଲ ତାହା ହିଁ କଲେ । ସେ ମଧୁସୂଦନଙ୍କୁ କଲେଜର ବିଭିନ୍ନ ଶ୍ରେଣୀକୁ ନେଇ ସେକ୍ସପିୟରିଆନ୍ ଟ୍ରାଜେଡ଼ି ଠାରୁ ଆରମ୍ଭ କରି ଇୟୁକ୍ଲିଡ୍‌ଙ୍କ ଜ୍ୟାମିତି ଆଦି ଭିନ୍ନ ଭିନ୍ନ ବିଷୟରେ ପଢ଼ାଇବାକୁ ନିର୍ଦ୍ଦେଶ ଦେଲେ । ମଧୁସୂଦନଙ୍କ ପଢ଼ାଇବା ଶୈଳୀରେ ସେ ଏତେ ମୁଗ୍ଧ ହୋଇଗଲେ ଓ ତତ୍‌କ୍ଷଣାତ୍ ତାଙ୍କୁ ନିଯୁକ୍ତି ପତ୍ର ଦେବାକୁ ରାଜି ହୋଇଗଲେ । ତେବେ ତା' ଆଗରୁ ମଧୁସୂଦନ ପଚାରିଲେ—ସେ ମାସିକ କେତେଟଙ୍କା ବେତନ ଦେବେ ? ପ୍ରିନ୍ସପାଲ ତାଙ୍କୁ ମାସିକ ଦୁଇ ଶହ ଟଙ୍କା ଦେବା କଥା କହିବାରୁ ମଧୁସୂଦନ ଚାରିଶହ ଟଙ୍କାରୁ କମ୍ ହେଲେ ଚାକିରି କରିବେ ନାହିଁ ବୋଲି କହି ଚାଲି ଆସିଲେ ।

ଶେଷକୁ ୧୮୭୬ ମସିହାରେ ଖିଦିରପୁରର ଗାର୍ଡେନ୍‌ରିଚ୍ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ସେ ଯୋଗ ଦେଲେ । ଏଥିସହିତ କଲିକତା ବିଶ୍ୱବିଦ୍ୟାଳୟର ଆଇନ ବିଭାଗରେ ମଧ୍ୟ ନାମ ଲେଖାଇଲେ ।

# ପତ୍ନୀ ବିୟୋଗ ଓ କଟକ ପ୍ରତ୍ୟାବର୍ତ୍ତନ

ଗାର୍ଡେନରିଚ୍ ହାଇସ୍କୁଲରେ ଶିକ୍ଷକତା କରୁଥିବା ବେଳେ ମଧୁସୂଦନ ଘରୋଇ ଶିକ୍ଷକତା ମଧ କରୁଥିଲେ । ଏହି ସମୟରେ ସେ ଜୀବନରେ ଜଣେ ଉଦୀୟମାନ ଛାତ୍ରଙ୍କୁ ପଢ଼ାଇବାର ସୁଯୋଗ ପାଇଥିଲେ । ସେ ହେଉଛନ୍ତି ପ୍ରସିଦ୍ଧ ଚିକିତ୍ସକ ଡାକ୍ତର ଗଙ୍ଗାଧର ମୁଖାର୍ଜୀଙ୍କ ପୁଅ ଆଶୁତୋଷ ମୁଖାର୍ଜୀ । ଡାକ୍ତର ମୁଖାର୍ଜୀ ତାଙ୍କ ପୁତ୍ରର ଶିକ୍ଷାର ଦାୟିତ୍ୱ ମଧୁସୂଦନଙ୍କ ହାତରେ ନ୍ୟସ୍ତ କରିଥିଲେ । ମଧୁସୂଦନ ଆଶୁତୋଷଙ୍କୁ ବିଦ୍ୟାଳୟରେ ପଢ଼ା ଯାଉଥିବା ବିଷୟବସ୍ତୁ ସହିତ ତାଙ୍କର ଚରିତ୍ର ଓ ବ୍ୟକ୍ତିତ୍ୱ ଗଠନ ଉପରେ ବିଶେଷ ଧ୍ୟାନ ଦେଉଥିଲେ । ମଧୁସୂଦନ ସେହି ଶିଶୁ ବୟସରୁ ଆଶୁତୋଷଙ୍କ ଉପରେ ଏପରି ପ୍ରଭାବ ପକେଇଥିଲେ ଯେ, ସେ ଜୀବନ ବ୍ୟାପୀ ତାଙ୍କୁ ତାଙ୍କର ଗୁରୁ ବୋଲି ସ୍ୱୀକାର କରିଥିଲେ । ୧୯୨୪ ମସିହାରେ ସାର୍ ଆଶୁତୋଷ ମୁଖାର୍ଜୀ ଏକ ପତ୍ରରେ ଉଲ୍ଲେଖ କରିଥିଲେ ଯେ, "ବାରିଷ୍ଟର ମଧୁସୂଦନ ମୋର କେବଳ ଜଣେ ସାଧାରଣ ଗୁରୁ ନ ଥିଲେ କି ସେ ମୋତେ କେବଳ ଇଂରାଜୀ ପଢ଼ଉ ନ ଥିଲେ । ଅଧିକନ୍ତୁ ମୋର ଚରିତ୍ର ଗଠନ ନିମନ୍ତେ ସବୁ ପ୍ରକାର ଉଦ୍ୟମ କରିଥିଲେ ।"

ସେହି ସମୟରେ ଜଣେ ଆଦର୍ଶବାଦୀ ତଥା ଛାତ୍ରବତ୍ସଳ ଶିକ୍ଷକ ଭାବରେ ମଧୁସୂଦନଙ୍କର ଖ୍ୟାତି ଖୁବ୍ ବଢି ଯାଇଥିଲା । ତେଣୁ ସେତେବେଳର ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କୁ ନିଜ ନିଜ ପିଲାଙ୍କ ପାଇଁ ଘରୋଇ ଶିକ୍ଷକ ଭାବରେ ନିଯୁକ୍ତ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । କଲିକତା ହାଇକୋର୍ଟର ଆଡଭୋକେଟ ଭୁବନ ମୋହନ ଦାସ ତାଙ୍କ ପୁଅ ଚିତ୍ତରଞ୍ଜନଙ୍କ ଶିକ୍ଷା ଭାର ଗ୍ରହଣ କରିବାକୁ ମଧୁସୂଦନଙ୍କୁ ଅନୁରୋଧ କରିଥିଲେ । ମାତ୍ର ବିଭିନ୍ନ କାମରେ ବ୍ୟସ୍ତ ରହୁଥିବା ହେତୁ ମଧୁସୂଦନ ଆଡଭୋକେଟ ଭୁବନ ମୋହନଙ୍କ ଅନୁରୋଧ ରକ୍ଷା କରି ପାରି ନ ଥିଲେ । ଅବଶ୍ୟ ଯେତେବେଳେ ସମୟ ପାଉଥିଲେ ସେ ଚିତ୍ତରଞ୍ଜନଙ୍କୁ ଆବଶ୍ୟକୀୟ ସଦୁପଦେଶ ଦେବାକୁ ଭୁଲୁ ନ ଥିଲେ ।

ମଧୁସୂଦନ ୧୮୭୮ ମସିହାରେ ଓକିଲାତି ପାସ୍ କଲେ ଏବଂ କଲିକତାର ବିଭିନ୍ନ ଅଦାଲତମାନଙ୍କରେ ଆଇନ୍ ବ୍ୟବସାୟ ଆରମ୍ଭ କରିଦେଲେ । କଲିକତା ସେତେବେଳେ ଦେଶର ରାଜନୈତିକ, ସାଂସ୍କୃତିକ ତଥା ସାମାଜିକ କାର୍ଯ୍ୟକ୍ରମର

ପେଣ୍ଠସ୍ଥଳୀ ଥିଲା । ମଧୁସୂଦନ ନିଜର ଅସାଧାରଣ ପ୍ରତିଭା ତଥା ପ୍ରତ୍ୟୁତ୍ପନ୍ନମତିତା ବଳରେ ସବୁକ୍ଷେତ୍ରରେ ପରିଚିତ ହୋଇ ପାରିଥିଲେ । ମଧୁସୂଦନ ଏହି ସମୟରେ କେତେକ ଜନ କଲ୍ୟାଣକର କାର୍ଯ୍ୟ ହାତକୁ ନେଲେ ।

ଦେଶର ବିଭିନ୍ନ ସ୍ଥାନରୁ ସେତେବେଳେ ଲୋକମାନେ କଲିକତାକୁ ଜୀବିକା ଅର୍ଜନ ଆଶାରେ ଆସି ବସବାସ କରୁଥିଲେ । ସେହି ଲୋକମାନେ ଅତି ଦୟନୀୟ ଅବସ୍ଥାରେ କାଳାତିପାତ କରୁଥିଲେ । ମାଲିକମାନଙ୍କ ଦ୍ୱାରା ଅତ୍ୟାଚାରିତ ହେଉଥିଲେ । ଭଲରେ ଗଣ୍ଡେ ଖାଇବାକୁ ପାଉ ନ ଥିଲେ କି ରହିବାକୁ ଜାଗା ଖଣ୍ଡିଏ ପାଉ ନ ଥିଲେ । ମଧୁସୂଦନ ସେମାନଙ୍କ ସହିତ ମିଶି ସେମାନଙ୍କର ନିକଟତର ହେଲେ ଏବଂ ସେମାନଙ୍କର ଦୁଃଖଦୁର୍ଦ୍ଦଶାର କଥା ଜାଣିଲେ । ସେମାନଙ୍କୁ ନେଇ ମଧୁସୂଦନ କଲିକତାର ମାଟିଆବୁରୁଜ ଅଞ୍ଚଳରେ ୧୮୭୫ ମସିହାରେ ଏକ ଲେବର ୟୁନିୟନ ଗଠନ କଲେ । ଏହି ଲେବର ୟୁନିୟନ କଲିକତାର ଦ୍ୱିତୀୟ ଶ୍ରମିକ ସଂଗଠନ ଥିଲା । ୧୮୭୦ ମସିହାରେ ଶଶିପଦ ବାନାର୍ଜୀ ପ୍ରଥମେ ଏକ ଶ୍ରମିକ ସଂଗଠନ କରିଥିଲେ ।

ଏହିପରି ଭିନ୍ନ ଭିନ୍ନ କାର୍ଯ୍ୟରେ ଲିପ୍ତ ରହୁଥିବା ମଧୁସୂଦନଙ୍କୁ ତାଙ୍କର ପତ୍ନୀ ସୌଦାମିନୀ ଅକୁଣ୍ଠ ସହଯୋଗ ଓ ପ୍ରେରଣା ଯୋଗାଇ ଦଉଥିଲେ । ସୌଦାମିନୀ ଜଣେ ସରଳ ଓ ଉଦାର ହୃଦୟା ତଥା ଅତି ଧର୍ମ ପରାୟଣା ମହିଳା ଥିଲେ । ସେ ଚାକର ବାକରଙ୍କୁ ନିଜ ପୁଅଝିଅ ଭଳି ମନେ କରୁଥିଲେ । ଥରେ ତାଙ୍କ ଘରେ ରହୁଥିବା ଜଣେ ଚାକର ଝାଡ଼ାବାନ୍ତିରେ ଆକ୍ରାନ୍ତ ହୋଇ ପଡିଲା । ସୌଦାମିନୀ ତା'ର ସେବା ଯତ୍ନ ନିଜ ହାତରେ କରିଥିଲେ । ସୌଦାମିନୀଙ୍କର ଏହି ପରୋପକାର ଗୁଣ ମଧୁସୂଦନଙ୍କୁ ଆନନ୍ଦିତ କରୁଥିଲା ଏବଂ ସେ ସୌଦାମିନୀଙ୍କ ଭଳି ପତ୍ନୀଟିଏ ପାଇଥିବା ହେତୁ ଗର୍ବ କରୁଥିଲେ । ଏହାଛଡ଼ା ଦୁହେଁ ଦୁହିଁଙ୍କୁ ଗଭୀର ଭାବରେ ଭଲ ପାଉଥିଲେ ।

ମାତ୍ର ଏହି ସୁଖର ସଂସାର ବେଶିଦିନ ତିଷ୍ଠିଲା ନାହିଁ । ମଧୁସୂଦନ କଲିକତାର ଆଲିପୁର ନିମ୍ନ ଅଦାଲତରେ ଓକିଲାତି କରୁଥିବା ସମୟରେ ଦିନେ ରାତିରେ ତାଙ୍କର ପତ୍ନୀ ସୌଦାମିନୀଙ୍କୁ ଗିଲାସେ ପାଣି ଆଣି ଦେବାକୁ କହିଲେ । ସୌଦାମିନୀ ମଧ ଅତି ଆଗ୍ରହର ସହିତ ସ୍ୱାମୀଙ୍କ ପାଇଁ ପାଣି ଆଣିବାକୁ ଚାଲିଗଲେ । ମାତ୍ର ମାଠିଆ ପାଖରେ ବସୁବସୁ ତାଙ୍କର ହୃଦ୍‌ଘାତରେ ମୃତ୍ୟୁ ହେଲା । ଏ ଘଟଣା ଏତେ ଶୀଘ୍ର ଓ

ଆକସ୍ମିକ ଭାବରେ ଘଟିଗଲା ଯେ ପାଖଘରେ ବସିଥିବା ମଧୁସୂଦନ ମଧ୍ୟ ସେକଥା ଜାଣିପାରିଲେ ନାହିଁ ।

ମୃତ୍ୟୁ ବେଳକୁ ସୌଦାମିନୀଙ୍କୁ ୩୧ ବର୍ଷ ହୋଇଥିଲା । ସେମାନେ ମାତ୍ର ପାଞ୍ଚବର୍ଷର ବୈବାହିକ ଜୀବନ ବିତାଇଥିଲେ । ସେମାନଙ୍କର କୌଣସି ସନ୍ତାନ ସନ୍ତତି ହୋଇ ନ ଥିଲେ । ସୌଦାମିନୀଙ୍କର ଅକାଳ ମୃତ୍ୟୁ ମଧୁସୂଦନଙ୍କୁ ଦାରୁଣ ଆଘାତ ଦେଇଥିଲା । ଆଉ ଥରେ ବିବାହ କରିବା ପାଇଁ ମଧ୍ୟ ତାଙ୍କର ବନ୍ଧୁମାନେ ତାଙ୍କୁ ପରାମର୍ଶ ଦେଇଥିଲେ । ହେଲେ ସୌଦାମିନୀଙ୍କର ପ୍ରେମ ଓ ଭଲ ପାଇବା ଏତେ ଗଭୀର ଥିଲା ଯେ, ମଧୁସୂଦନ ଆଉ ଥରେ ବିବାହ କରିବା କଥା ଚିନ୍ତା ମଧ୍ୟ କରି ପାରିଲେ ନାହିଁ । ୧୮୯୦ ମସିହାରେ ବନ୍ଧୁ ଅମ୍ବିକା ଚରଣ ହାଜରାଙ୍କ ପତ୍ନୀ ପ୍ରସନ୍ନମୟୀଙ୍କ ମୃତ୍ୟୁ ପରେ ସେ ଶୈଳବାଳାଙ୍କ ସମେତ ହାଜରାଙ୍କର ଦୁଇଝିଅ ଓ ଗୋଟିଏ ପୁଅକୁ ପୋଷ୍ୟ ସନ୍ତାନ ଭାବରେ ଗ୍ରହଣ କଲେ ।

ସୌଦାମିନୀଙ୍କ ବିୟୋଗ ପରେ କଲିକତା ପ୍ରତି ଥିବା ତାଙ୍କର ସମସ୍ତ ଆକର୍ଷଣ ଲୋପ ପାଇଗଲା । ସେ କଟକ ଫେରି ଆସିଲେ । ହେଲେ ପତ୍ନୀ ବିୟୋଗର ଦାରୁଣ ଦୁଃଖକୁ ଭୁଲି ପାରିଲେ ନାହିଁ । ସେ ତାଙ୍କ ଶୋଇବା ଘରେ ଓ ପତ୍ନୀଙ୍କ ସମାଧିରେ ଲେଖିଥିଲେ- 'ମରିନାହଁ, ଆଗେ ଯାଇଛ ମାତ୍ର !'

## ଓଡ଼ିଶାରେ ଓକିଲାତି

ଯେଉଁ ସମୟରେ ମଧୁସୂଦନ ଓଡ଼ିଶା ଫେରିଲେ ସେହି ସମୟରେ ଓଡ଼ିଶା ଓ ଓଡ଼ିଆମାନଙ୍କର ସ୍ଥିତି ଅତି ଦୟନୀୟ ଥିଲା । ନ'ଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ଅର୍ଥନୈତିକ ମେରୁଦଣ୍ଡକୁ ଦୋହଲେଇ ଦେଇଥିଲା । ଓଡ଼ିଆମାନେ ଅତ୍ୟନ୍ତ ଶୋଚନୀୟ ଅବସ୍ଥାରେ ଜୀବନ ଅତିବାହିତ କରୁଥିଲେ । ଓଡ଼ିଶାର ପ୍ରଥମ ଗ୍ରାଜୁଏଟ, ପ୍ରଥମ ଏମ୍.ଏ. ତଥା ପ୍ରଥମ ବାରିଷ୍ଟର ମଧୁସୂଦନଙ୍କ ପାଇଁ ସମ୍ବର୍ଦ୍ଧନା ସଭାଟିଏ ଆୟୋଜିତ ହୋଇ ନ ଥିଲା ।

କଟକ ଅଦାଲତର ଓକିଲଖାନାରେ ମଧୁସୂଦନଙ୍କୁ ବସିବା ପାଇଁ ସ୍ଥାନଟିଏ ମଧ୍ୟ ଦିଆଯାଇ ନ ଥିଲା । କାରଣ ସେତେବେଳେ କଟକ ଅଦାଲତରେ ବଙ୍ଗାଳୀ ଓକିଲଙ୍କର ଖୁବ୍ ପ୍ରତିପତ୍ତି ଥିଲା । ସେମାନେ ଓଡ଼ିଆମାନଙ୍କୁ ଅତି ହୀନଦୃଷ୍ଟିରେ ଦେଖୁଥିଲେ ।

ଆଉ ଓଡ଼ିଆ ଓକିଲ ମଧୁସୂଦନଙ୍କ ପାଇଁ ସେମାନଙ୍କ ଭିତରେ ଈର୍ଷା, ଘୃଣା ଏବଂ ଅସୂୟା ଭାବ ଥିଲା । ସେମାନେ ତାଙ୍କୁ ନାନା ଭାବରେ ପରିହାସ କରୁଥିଲେ । କିନ୍ତୁ ମଧୁସୂଦନଙ୍କର ସେଥିପ୍ରତି ଟିକିଏ ବି ନଜର ନ ଥିଲା । ତାଙ୍କର ନିଜର ଦକ୍ଷତା ଉପରେ ଯଥେଷ୍ଟ ଭରସା ଥିଲା ଏବଂ ସେ ଏକଥା ଜାଣିଥିଲେ ଯେ, ଓଡ଼ିଆମାନଙ୍କ ପାଇଁ ତାଙ୍କର ବହୁତ କିଛି କରିବାକୁ ଅଛି ।

କଟକର ତତ୍କାଳୀନ ଡିଷ୍ଟ୍ରିକ୍ଟ ଜଜ୍ ଥିଲେ ମି.କକଲାନ ସାହେବ । ସେ ଗୁଣୀ ତଥା ବିଦ୍ୱାନମାନଙ୍କୁ ଖୁବ୍ ଭଲ ପାଉଥିଲେ । ମଧୁସୂଦନଙ୍କ ବିଷୟରେ ସେ ପୂର୍ବରୁ ଅନେକ ପ୍ରଶଂସା ଶୁଣିଥିଲେ । ଆଉ ଯେତେବେଳେ ଜାଣିଲେ ଯେ ଅଦାଲତର ଲାଇବ୍ରେରୀରେ ଜଣେ ଓକିଲଙ୍କୁ ବସିବା ପାଇଁ ସ୍ଥାନ ଦିଆଯାଉ ନାହିଁ, ସେତେବେଳେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ନିଜେ ତାଙ୍କ ଲାଗି ଉଦ୍ଦିଷ୍ଟ ଖାସ୍ କମରାରେ ମଧୁସୂଦନଙ୍କ ବସିବା ପାଇଁ ସ୍ଥାନ ସ୍ଥିର କରିଦେଲେ ।

ମଧୁସୂଦନଙ୍କୁ ବସିବା ପାଇଁ ସିନା ସ୍ଥାନ ମିଳିଗଲା; କିନ୍ତୁ ଲଢ଼ିବା ପାଇଁ ମାମଲାଟାଏ ମିଳିଲା ନାହିଁ । ବଙ୍ଗାଳୀମାନଙ୍କର ପ୍ରାଦୁର୍ଭାବ ଓ ଓଡ଼ିଆମାନଙ୍କର ଅଜ୍ଞତା ଯୋଗୁ କଟକ ଅଦାଲତରେ ମଧୁବାବୁ ଜଣେ ସାଧାରଣ ଅଜଣା ଓକିଲ ଭାବରେ ଅନେକ ଦିନ ଅତିବାହିତ କଲେ । ସେ ଅସୀମ ଧୈର୍ଯ୍ୟର ସହିତ ପ୍ରଥମ ମାମଲାକୁ ଅପେକ୍ଷା କରି ରହିଥିଲେ ।

ସେଇ ଦିନ ଆସି ଉପସ୍ଥିତ ହେଲା । ପୁରୀ ସହରର ଜନୈକ ଧନୀ ମହନ୍ତ ଜଣେ ଗରିବ ଚାଷୀ ବିରୁଦ୍ଧରେ ମୋକଦ୍ଦମାଟିଏ ଦାଏର କରିଥିଲେ । ସେ ନିଜ ଧନ ବଳରେ ଏମିତି ଏକ ଚକ୍ରବ୍ୟୂହ ରଚନା କରିଥିଲେ ଯେ, ଯେମିତି କୌଣସି ବି ଓକିଲ ସେହି ଗରିବ ଚାଷୀଟି ସପକ୍ଷରେ ଲଢ଼ି ପାରିବେ ନାହିଁ । ସେଥିପାଇଁ ସେ ତାଙ୍କର ଲ'ଏଜେଣ୍ଟଙ୍କ ଜରିଆରେ ଗୋଟିଏ ଓକାଲାତ୍‌ନାମାରେ ସବୁ ଓକିଲଙ୍କଠୁ ଦସ୍ତଖତ କରାଇ ନେଉଥାନ୍ତି । ଲ'ଏଜେଣ୍ଟ ଜଣକ ସବୁ ବଙ୍ଗାଳୀ ଓକିଲଙ୍କ ଠୁ ଦସ୍ତଖତ କରି ସାରି ଶେଷକୁ ମଧୁସୂଦନଙ୍କ ନିକଟରେ ପହଞ୍ଚିଲେ । ମଧୁସୂଦନ ସେତେବେଳେ ଏକୁଟିଆ ଓଡ଼ିଆ ଓକିଲ ଥିଲେ । ଲ'ଏଜେଣ୍ଟ ଭାବିଲା- ଏଇ ଓଡ଼ିଆ ଓକିଲଟା କାହିଁକି ବାଦ୍ ପଡ଼ିବ ? ଏହାଠୁ ବି ଦସ୍ତଖତଟିଏ କରାଇ ନେଲେ କାମ ଖତମ୍ । ପ୍ରତିବାଦୀ ଗରୀବ ଚାଷୀଟା ନିଜ ସପକ୍ଷରେ ଦେବା ପାଇଁ ଆଉ ଗୋଟିଏ ବି ଓକିଲ ପାଇବ ନାହିଁ । ତା'ଛଡ଼ା ସେ ଏତେ ପଇସା କୋଉଠୁ ଆଣିବ ଯେ ବାହାରୁ ଓକିଲ ଆଣି ମାମଲା ଲଢ଼ିବ !

କିନ୍ତୁ ମଧୁବାବୁ ତ ଭିନ୍ନ ଉପାଦାନରେ ଗଢ଼ା ଜଣେ ମଣିଷ ଥିଲେ । ସେ ସଙ୍ଗେସଙ୍ଗେ ଧନୀ ମହନ୍ତଙ୍କ ଅସଦ୍ ଅଭିପ୍ରାୟ ବୁଝିପାରିଲେ ଏବଂ ଯେତେ ଅଧିକ ପାରିଶ୍ରମିକ ଦେଲେ ମଧ ସେ ସେହି ଓକାଲାତନାମାରେ ଦସ୍ତଖତ କରିବେ ନାହିଁ ବୋଲି ରୋକ୍‌ଠୋକ୍ ମନା କରିଦେଲେ । ଓଲଟି ମହନ୍ତଙ୍କୁ କହିଲେ- ଆପଣ ତ ନିଜ ପାଇଁ ଅଦାଲତର ସମସ୍ତ ଓକିଲଙ୍କୁ କିଣିନେଲେଣି । ଅନ୍ତତଃ ସେହି ଗରିବ ଚାଷୀଟା ପାଇଁ ଏଇ ନୂଆ ଓକିଲଟାକୁ ଛାଡି ଦିଅନ୍ତୁ । ମହନ୍ତ ବି ଚିନ୍ତାକଲେ- ତାଙ୍କ ପାଖରେ ଅଦାଲତର ସବୁ ବଛା ବଛା ଓକିଲ । ଏଇ ଓଡ଼ିଆଟାକୁ ନ ନେଲେ କ'ଣ ମାମଲା ବଳେଇ ଯିବ ।

ହେଲେ ବିଧିର ବିଧାନ ଭିନ୍ନ ଥିଲା । କଟକର ସବୁ ଓକିଲଙ୍କ ବିରୋଧରେ ଠିଆ ହୋଇ ମଧୁବାବୁ କେସ୍ ଲଢ଼ିଲେ । ଆଉ ଅବଶେଷରେ ଜିତାପଟ ଗରିବ ଚାଷୀଟିର ହିଁ ହେଲା ।

ଏହି ଘଟଣା ପରେ ମଧୁସୂଦନ ଆଉ ନୂଆ କିମ୍ବା ଅଜଣା ହୋଇ ରହିଲେ ନାହିଁ । ଚାହୁଁଚାହୁଁ ତାଙ୍କର ଖ୍ୟାତି ଆକାଶଛୁଆଁ ହୋଇଗଲା । ତାଙ୍କ ନିକଟକୁ ମାଲି ମକଦ୍ଦମାର ସୁଅ ଛୁଟିଲା ।

## ଶ୍ରୀମନ୍ଦିର ପ୍ରଶାସନ ମାମଲା

ମଧୁସୂଦନଙ୍କ ଓକିଲାତି ଜୀବନରେ ଶ୍ରୀମନ୍ଦିର ପ୍ରଶାସନ ମାମଲା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରେ । ମଧୁସୂଦନ ଜୀବନରେ ଶହଶହ ମାମଲା ଲଢ଼ି ଇତିହାସ ସୃଷ୍ଟି କରିଛନ୍ତି । ତେବେ ଓଡ଼ିଶାର ଜନଜୀବନ ସହିତ ଓତପ୍ରୋତ ଭାବରେ ଜଡ଼ିତ ଥିବା ଶ୍ରୀଜଗନ୍ନାଥଙ୍କ ବଡ଼ ଦେଉଳକୁ ନେଇ ସୃଷ୍ଟି ହୋଇଥିବା ଏହି ମାମଲା ମଧୁସୂଦନଙ୍କ ବାରିଷ୍ଟରୀ ଜୀବନରେ ଏକ ସ୍ମରଣୀୟ ଘଟଣା ।

୧୮୭୮ ମସିହାରେ ପୁରୀ ରାଜା ଦିବ୍ୟସିଂହ ଦେବ ଇଂରେଜମାନଙ୍କ ଦ୍ୱାରା ଗୋଟିଏ ମିଥ୍ୟା ହତ୍ୟା ଅପରାଧରେ ଅଭିଯୁକ୍ତ ହେଲେ । ତାଙ୍କୁ ଦୋଷୀ ସାବ୍ୟସ୍ତ କରି ଆଣ୍ଡାମାନ ଦ୍ୱୀପକୁ ପଠାଇ ଦିଆଗଲା । ଦିବ୍ୟସିଂହଙ୍କୁ ଦୋଷୀ ସାବ୍ୟସ୍ତ କରିବା ପଛରେ ବାସ୍ତବ ଘଟଣାଟି ଥିଲା ଏହିପରି–

## ଜାତିପ୍ରାଣ ମଧୁସୂଦନ

୧୮୭୪ ମସିହାରେ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର ରିଚାର୍ଡ ଟେମ୍ପଲ କଟକ ଦରବାରକୁ ଆସିଥିବା ବେଳେ ଦିବ୍ୟସିଂହ ଦେବ ଦରବାର ଛାଡ଼ି ଚାଲି ଯାଇଥିଲେ । ପୁରୀ ରାଜାଙ୍କର ଏତାଦୃଶ ଆଚରଣ ବ୍ରିଟିଶ ରାଜତନ୍ତ୍ର ପ୍ରତି ଅପମାନ ବୋଲି ରିଚାର୍ଡ ଟେମ୍ପଲ ଅନୁଭବ କଲେ ଏବଂ ତାଙ୍କୁ କିପରି ଶାସ୍ତି ଦେବେ ତାହାର ଯୋଜନା ପ୍ରସ୍ତୁତ କଲେ । ସେଥିପାଇଁ ତାଙ୍କ ବିରୁଦ୍ଧରେ ଏକ ମିଥ୍ୟା ନରହତ୍ୟା ଅଭିଯୋଗ ଅଣାଗଲା ଓ ତାହାର ବିଚାର ଚାଲିଲା । ବିଚାରରେ ତାଙ୍କୁ ସମ୍ପୂର୍ଣ୍ଣ ଭାବରେ ଦୋଷୀ ପ୍ରମାଣିତ କରାଯାଇ ନ ପାରିଲେ ବି ତାଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆଗଲା । ଫଳରେ ରାଜ ସିଂହାସନ ଖାଲି ପଡ଼ିଗଲା ଏବଂ ଶ୍ରୀମନ୍ଦିରକୁ ସମ୍ପୂର୍ଣ୍ଣ ରୂପେ ଅକ୍ତିଆର କରିବା ପାଇଁ ବ୍ରିଟିଶମାନଙ୍କ ବାଟ ପରିଷ୍କାର ହୋଇଗଲା ।

ମାତ୍ର ଦିବ୍ୟସିଂହ ଦେବଙ୍କ ମାତା ସୂର୍ଯ୍ୟମଣି ପାଟ ମହାଦେଈ ଦିବ୍ୟସିଂହଙ୍କ ପାଞ୍ଚ ବର୍ଷର ପୁଅ ମୁକୁନ୍ଦଦେବଙ୍କୁ ପୁରୀ ରାଜଗାଦିରେ ଅଭିଷିକ୍ତ କରାଇଲେ ଓ ତାଙ୍କର ପ୍ରତିନିଧି ଭାବରେ ନିଜେ ଶାସନ ପରିଚାଳନା କଲେ । ହେଲେ ଏଥିରେ କମ୍ପାନୀ ପ୍ରଶାସନ ରାଜି ହେଲାନାହିଁ । ଦେଉଳ ପରିଚାଳନା ଦାୟିତ୍ୱ ରାଣୀଙ୍କ ହାତରୁ ଛଡେଇ ନିଆଗଲା । ପୂର୍ବ ଚୁକ୍ତି ଅନୁଯାୟୀ ପୁରୀ ରାଜାଙ୍କୁ ସରକାରୀ ରାଜକୋଷରୁ ବାର୍ଷିକ ଦିଆଯାଉଥିବା ଆର୍ଥିକ ପ୍ରାପ୍ୟ ବି ବନ୍ଦ କରିଦିଆଗଲା । ପୁଣି ଜମିଜମା ଉପରେ ରାଜାଙ୍କର ଦଖଲକୁ କୋର୍ଟ ଆଦେଶ ବଳରେ ବାତିଲ କରାଗଲା । ଫଳରେ ସୂର୍ଯ୍ୟମଣି ପାଟ ମହାଦେଈଙ୍କର ଆର୍ଥିକ ଅବସ୍ଥା ଦିନକୁ ଦିନ ଶୋଚନୀୟ ହେବାରେ ଲାଗିଲା । ଏମିତିକି ଦୈନନ୍ଦିନର ଖର୍ଚ୍ଚ ମେଣ୍ଟାଇବା ପାଇଁ ବି ତାଙ୍କୁ ବିଭିନ୍ନ ଆଡୁ ଋଣ କରିବା ପାଇଁ ପଡୁଥିଲା । ସେ ବିଷୟରେ ସେ ଫୋର୍ଟ ଉଇଲିୟମରେ ନାଲିସ କରିଥିଲେ ମଧ୍ୟ ସେଥିରେ କୌଣସି ସୁଫଳ ମିଳିଲା ନାହିଁ । ଠିକ୍ ଏତିକିବେଳେ ବଡ଼ ଦେଉଳର ପରିଚାଳନା ନିମନ୍ତେ ଜଣେ ରିସିଭର ନିଯୁକ୍ତ କରିବାକୁ ଦାବି କରି ସ୍ଥାନୀୟ ପ୍ରଶାସନ ପକ୍ଷରୁ ଅଦାଲତରେ ମାମଲା ରୁଜୁ କରାଗଲା । ମାମଲାର ରାୟ ମଧ୍ୟ ସ୍ଥାନୀୟ କମ୍ପାନୀ ସରକାର ସପକ୍ଷରେ ଗଲା । ରାଜା ମୁକୁନ୍ଦଦେବ ଓ ତାଙ୍କ ପ୍ରତିନିଧି ସୂର୍ଯ୍ୟମଣି ପାଟ ମହାଦେଈଙ୍କୁ ଶ୍ରୀମନ୍ଦିର ପରିଚାଳନା ସମ୍ପର୍କିତ ସମସ୍ତ ଅଧିକାରରୁ ବଞ୍ଚିତ କରାଗଲା । ସେତିକି ନୁହେଁ, ସତକୁସତ ଶ୍ରୀମନ୍ଦିର ପରିଚାଳନା ନିମନ୍ତେ ଜଣେ ରିସିଭର ନିଯୁକ୍ତ କରିବାକୁ ମଧ୍ୟ ଅଦାଲତ କମ୍ପାନୀ ପ୍ରଶାସନକୁ ନିର୍ଦ୍ଦେଶ ଦେଲେ ।

ଏହାପରେ ପାଟ ମହାଦେଇଙ୍କର ଆଉ କିଛି କରିବାର ନ ଥିଲା । ସେ ଉପାୟଶୂନ୍ୟ ଥିଲେ । ଏମିତିକି ରାୟ ବିରୁଦ୍ଧରେ କଲିକତା ହାଇକୋର୍ଟକୁ ଯିବା ଲାଗି ମଧ ତାଙ୍କ ନିକଟରେ ସମ୍ବଳ ନ ଥିଲା । ତେବେ ଏହି ଘଟଣା ସମଗ୍ର ଓଡ଼ିଶାର ଲୋକମାନଙ୍କ ମଧରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ଚାରିଆଡେ ଇଂରେଜ ସରକାର ବିରୋଧରେ ବିକ୍ଷୋଭ, ଆନ୍ଦୋଳନ ହେବାକୁ ଲାଗିଲା ।

ଏହି ସମୟ ବେଳକୁ ମଧୁସୂଦନ କଟକରେ ଜଣେ ଜଣାଶୁଣା ଓକିଲ । ଅନେକ ମୋକଦ୍ଦମା ଜିତି ସେ ଓଡ଼ିଶାବାସୀଙ୍କ ନିକଟରେ ନିଜର ଏକ ଉତ୍ତମ ଭାବମୂର୍ତ୍ତି ସୃଷ୍ଟି କରି ପାରିଥିଲେ । ସୂର୍ଯ୍ୟମଣି ପାଟ ମହାଦେଇଙ୍କ ପାଖରେ ମଧ ସେହି ଖବର ଥାଏ । ଅନେକ ବିଚାର ଆଲୋଚନା କରି ଶେଷରେ ପାଟ ମହାଦେଇ ମଧୁସୂଦନଙ୍କ ନିକଟକୁ ଚିଠି ଲେଖି ତାହାର ପ୍ରତିକାର କରିବାକୁ ଅନୁରୋଧ କଲେ ।

ମଧୁସୂଦନ ଖ୍ରୀଷ୍ଟଧର୍ମ ଗ୍ରହଣ କରି ଖ୍ରୀଷ୍ଟିଆନ୍ ହୋଇଥିଲେ ଏକଥା ସତ । ହେଲେ ସେ 'ଚର୍ଚ୍ଚିଆନ୍' ନ ଥିଲେ । ହିନ୍ଦୁ ଧର୍ମ, ଓଡ଼ିଶାର ଜନସାଧାରଣ, ଇତିହାସ, ସଂସ୍କୃତି, ପରମ୍ପରା ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ଥିଲା । ସେଥିପାଇଁ ସେ ମୋକଦ୍ଦମାଟିକୁ ଅତି ଆନନ୍ଦର ସହିତ ହାତକୁ ନେଲେ ଏବଂ କଲିକତା ହାଇକୋର୍ଟରେ ଲଢ଼ିବା ଲାଗି ମି.ଟି. ଉଡ୍‌ରଫ୍ ନାମକ ଜଣେ ବିଖ୍ୟାତ ଇଂରେଜ ବାରିଷ୍ଟରଙ୍କୁ ନିଯୁକ୍ତ କଲେ ।

କଲିକତା ହାଇକୋର୍ଟରେ ମାମଲାଟି ଦୀର୍ଘଦିନ ଧରି ଚାଲିଲା । ପୁରୀ ରାଜାଙ୍କ ପକ୍ଷରୁ ମଧୁସୂଦନ ଦର୍ଶାଇଥିଲେ ଯେ, ଦେଉଳର ସମସ୍ତ ସମ୍ପତ୍ତି ପୁରୀ ରାଜାଙ୍କର ବ୍ୟକ୍ତିଗତ ସମ୍ପତ୍ତି । ସାଧାରଣ ଲୋକଙ୍କର ଏଥିରେ କୌଣସି ଅଧିକାର ନାହିଁ । ସେମାନଙ୍କୁ କେବଳ ମନ୍ଦିର ଭିତରକୁ ଯାଇ ଦିଅଁ ଦର୍ଶନ ଓ ପୂଜା କରିବାର ଅଧିକାର ପ୍ରଦାନ କରାଯାଇଛି ।

ଏହି ମାମଲା ପାଇଁ ମଧୁସୂଦନ ଦିନରାତି ଏକାକାର କରି ଦେଇଥିଲେ । ପରିଶେଷରେ ତାଙ୍କର ଶ୍ରମ ସାର୍ଥକ ହେଲା । କଲିକତା ହାଇକୋର୍ଟର ରାୟ ରାଣୀ ସୂର୍ଯ୍ୟମଣି ପାଟ ମହାଦେଇଙ୍କ ସପକ୍ଷରେ ଗଲା । ଉଚ୍ଚ ଅଦାଲତ ତଳ ଅଦାଲତର ରାୟକୁ ସମ୍ପୂର୍ଣ୍ଣ ରୂପେ ବାତିଲ କରିଦେଇ କହିଲେ- ଦେଉଳ ପାଇଁ ଜଣେ ରିସିଭର ନିଯୁକ୍ତ କରିବାକୁ ତଳକୋର୍ଟ ଯେଉଁ ରାୟ ଦେଇଛନ୍ତି ତାହାର କୌଣସି ଆବଶ୍ୟକତା ଥିବା ଦର୍ଶାଇ ନ ଥିବାରୁ ତାହାକୁ ଆମ୍ଭେ ନାକଚ କରିଦେଉଛୁ ।

ହାଇକୋର୍ଟ ରିସିଭର ନିଯୁକ୍ତିକୁ ଅଗ୍ରାହ୍ୟ କରିଦେବା ପରେ ରାଜା ମୁକୁନ୍ଦଦେବଙ୍କୁ ବଡ଼ ଦେଉଳର ସମ୍ପୂର୍ଣ୍ଣ ଅଧିକାର ମିଳିଲା । ପରେ ସରକାର ମଧ୍ୟ ବାଧ୍ୟ ହୋଇ ପାଟ ମହାଦେଈଙ୍କ ସହିତ ସମ୍ପର୍କ ସ୍ଥାପନ କଲେ । ଅପରପକ୍ଷରେ, ଶ୍ରୀମନ୍ଦିର ପ୍ରଶାସନ ମାମଲାରେ ଜୟଯୁକ୍ତ ହେବା ପରେ ମଧୁସୂଦନଙ୍କ ଖ୍ୟାତି ଘରେ ଘରେ ପହଞ୍ଚିଗଲା । ତାଙ୍କ ନାମରେ ଲୋକେ ଗୀତ ବାନ୍ଧି ଗାଇବାକୁ ଲାଗିଲେ- 'ପାଠ ପଢ଼ିବିରେ ପାଠ ପଢ଼ିବି, କାଳିଆ ଘୋଡ଼ାରେ ଚଢ଼ିବି, ମଧୁ ବାରିଷ୍ଟର ସଙ୍ଗେ ଲଢ଼ିବି ।'

## ଉତ୍କଳ ସଭା

ରାଜ୍ୟ ତଥା ଦେଶର ହିତ ଲାଗି ଯାହାଙ୍କର ଜନ୍ମ ସେ ବା କିପରି ନିଜ ସୁଖ ସ୍ୱାଚ୍ଛନ୍ଦ୍ୟରେ ଆବଦ୍ଧ ହୋଇ ସୁଖୀ ହୋଇ ପାରିବେ ? ମଧୁସୂଦନଙ୍କ କ୍ଷେତ୍ରରେ ମଧ୍ୟ ଠିକ୍ ସେଇଆ ହେଲା । କଟକରେ ଓକିଲାତି କରି ସାରା ଓଡ଼ିଶାରେ ଚହଳ ପକେଇ ଦେଇଥିଲେ ମଧ୍ୟ ସେହି ସଫଳତାରେ ସେ ସୁଖୀ ହୋଇ ପାରୁ ନ ଥିଲେ । ବ୍ରିଟିଶ ଶାସିତ, ପୀଡ଼ିତ ଉତ୍କଳ ତଥା ଭାରତୀୟ ଜାତୀୟ ଜୀବନର ଦୟନୀୟ ଅବସ୍ଥା ତାଙ୍କୁ ପ୍ରତି ମୁହୂର୍ତ୍ତରେ ଦୁଃଖୀ କରୁଥିଲା । ଓଡ଼ିଶାବାସୀଙ୍କ ମଧ୍ୟରେ ନବ ଜାଗରଣ କେମିତି ଅଣାଯାଇ ପାରିବ ସେ ବିଷୟ ନେଇ ସେ ଗଭୀର ଭାବରେ ଚିନ୍ତାମଗ୍ନ ରହୁଥିଲେ ।

୧୮୮୨ ମସିହାରେ ଭାଇସରାୟ ଲର୍ଡ ରିପନଙ୍କ ଶାସନ କାଳରେ 'ସାୟତ୍ତ ଶାସନ ବ୍ୟବସ୍ଥା' ଘୋଷିତ ହେଲା ଓ ସମଗ୍ର ଦେଶରେ ମ୍ୟୁନିସପାଲିଟି ସଂସ୍ଥା ଗଠନ କରିବାର ମସୁଧା କରାଗଲା । ଓଡ଼ିଶାରେ ମଧ୍ୟ ସେହି ଯୋଜନାର ଶାସନତାନ୍ତ୍ରିକ ପ୍ରୟୋଗ ନେଇ କଳ୍ପନା ଜଳ୍ପନା ଆରମ୍ଭ ହୋଇଗଲା । କିନ୍ତୁ ଉତ୍କଳରେ ସେତେବେଳେ ଜନ ସଚେତନତାର ଅଭାବ ଥିବା ସାଙ୍ଗକୁ ଗଣନେତୃତ୍ୱର ମଧ୍ୟ ଘୋର ଅଭାବ ଥିଲା । ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଲର୍ଡ ରିପନ୍‌ଙ୍କ ପ୍ରସ୍ତାବିତ ସାମ୍ବିଧାନିକ ସଂସ୍କାରକୁ ଉତ୍କଳରେ କାର୍ଯ୍ୟକାରୀ କରିବା ପାଇଁ ମଧୁସୂଦନ ଅଣ୍ଟା ଭିଡ଼ିଲେ । ଏଥିରେ କର୍ମଯୋଗୀ ଗୌରୀଶଙ୍କର ତାଙ୍କର ପ୍ରଧାନ ମାର୍ଗଦର୍ଶକ ଥିଲେ । ସାୟତ୍ତ ଶାସନ ପ୍ରଣାଳୀର ବହୁବିଧ ଦିଗ ସହିତ ଲୋକଙ୍କୁ ପରିଚିତ କରାଇବାର ଲକ୍ଷ୍ୟ ନେଇ ସେହିବର୍ଷ ଅର୍ଥାତ୍ ୧୮୮୨ ମସିହା ଅଗଷ୍ଟ ମାସ ୧୬ ତାରିଖ ଦିନ କଟକ ପ୍ରିଣ୍ଟିଂ କମ୍ପାନୀ

କୋଠିରେ ଗୋଟିଏ ସାଧାରଣ ସଭା ଆହୂତ ହୋଇଥିଲା । 'ଉତ୍କଳ ଦୀପିକା' ପ୍ରଦତ୍ତ ତଥ୍ୟ ଅନୁଯାୟୀ ଏଥିରେ କଟକ ସହରର ବହୁ ବିଶିଷ୍ଟ ବ୍ୟକ୍ତି ଯୋଗ ଦେଇଥିଲେ । ଏହି ଅବସରରେ ସମସ୍ତଙ୍କର ସିଦ୍ଧାନ୍ତ ଅନୁସାରେ ଗୋଟିଏ ସଭା ବା ଆସୋସିଏସନ୍ ଗଠନ କରାଗଲା, ଯାହାର ନାମ ରଖାଗଲା 'ଉତ୍କଳ ସଭା ବା ଉତ୍କଳ ଆସୋସିଏସନ୍' । ଏହି ଉତ୍କଳ ସଭା ହେଉଛି ଓଡ଼ିଶାର ସର୍ବ ପ୍ରଥମ ରାଜନୈତିକ ଅନୁଷ୍ଠାନ । ଊନବିଂଶ ଶତାବ୍ଦୀରେ ଉତ୍କଳ ସଭା ଏକ ଶକ୍ତିଶାଳୀ ଅନୁଷ୍ଠାନ ଥିଲା । ଓଡ଼ିଶା ଡିଭିଜନ୍‌ର ଶାସନ ସମ୍ବନ୍ଧୀୟ ଯେ କୌଣସି ନୂତନ ଅଥବା ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନେବା ପୂର୍ବରୁ ବ୍ରିଟିଶ୍ ସରକାର ଏହି ସଭାର ମତାମତ ଲୋଡୁଥିଲେ ।

୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ଗଠିତ ହେବା ପର୍ଯ୍ୟନ୍ତ 'ଉତ୍କଳ ସଭା' କାର୍ଯ୍ୟକ୍ଷମ ରହିଥିଲା ଓ ମଧୁସୂଦନ ଦକ୍ଷତାର ସହିତ ଏହାର କାର୍ଯ୍ୟଭାର ତୁଲାଇଥିଲେ ।

ତତ୍କାଳୀନ ରେଭେନ୍ସା କଲେଜ ଅଧୀନରେ ଥିବା ଆଇନ କଲେଜକୁ ସୁରକ୍ଷିତ ରଖିବାରେ ମଧୁସୂଦନଙ୍କର କିଛି କମ୍ ଭୂମିକା ନ ଥିଲା । ୧୮୮୦ ମସିହାରେ ସରକାର କଟକର ଆଇନ୍ କଲେଜକୁ ବନ୍ଦ କରିଦେବାକୁ ନିଷ୍ପତ୍ତି ନେଇଥିଲେ । କାରଣ ଶିକ୍ଷକ ଅଭାବରୁ କଲେଜରେ ଶିକ୍ଷାଦାନ ଅତ୍ୟନ୍ତ ନିମ୍ନ ମାନର ଥିଲା । ତେଣୁ ପରୀକ୍ଷାଫଳ ଖରାପ ହେଉଥିଲା । ଓଡ଼ିଶାକୁ ଉତ୍ତମ ଗମନାଗମନ ଓ ଯୋଗାଯୋଗ ବ୍ୟବସ୍ଥା ନ ଥିବା ହେତୁ ଭାରତର ଦୂରଦୂରାନ୍ତ ଅଞ୍ଚଳରୁ ପ୍ରବୀଣ ଆଇନ୍ ଅଧ୍ୟାପକମାନେ ଆସି କଟକ ଆଇନ କଲେଜରେ ପାର୍ଟ ଟାଇମ୍ ଚାକିରି କରିବାକୁ ରାଜି ହେଉ ନ ଥିଲେ । ତେଣୁ କଟକ ଆଇନ କଲେଜଟି ପ୍ରାୟତଃ ବନ୍ଦ ହୋଇଯିବା ଅବସ୍ଥାରେ ଥିଲା । ହେଲେ ମଧୁସୂଦନଙ୍କ କାନରେ ଯେତେବେଳେ ଏଇ କଥା ପଡ଼ିଲା ସେ ତୁରନ୍ତ ଅବୈତନିକ ଭାବରେ ଆଇନ କଲେଜରେ ଅଧ୍ୟାପନା କରିବା ପାଇଁ ରାଜି ହୋଇଗଲେ । ଫଳରେ କଲେଜ ବନ୍ଦ ହେବାରୁ ବର୍ତ୍ତିଗଲା । ମଧୁସୂଦନ ୧୮୮୭ ମସିହାରେ କଟକ ଜିଲ୍ଲା ବୋର୍ଡର ଚେୟାରମ୍ୟାନ୍ ହେବା ପର୍ଯ୍ୟନ୍ତ ଏଠାରେ ପାଠ ପଢ଼ାଉଥିଲେ ।

# ଭାରତୀୟ ଜାତୀୟ କଂଗ୍ରେସ

୧୮୮୫ ମସିହାରେ ବମ୍ବେ ଠାରେ 'ଭାରତୀୟ ଜାତୀୟ କଂଗ୍ରେସ' ଗଠିତ ହେଲା । ସେହି ବର୍ଷ ଡିସେମ୍ବର ମାସ ୨୫ ତାରିଖ ଦିନ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେ ଠାରେ ଅନୁଷ୍ଠିତ ହେବ ବୋଲି ନିଷ୍ପତ୍ତି ନିଆଯାଇଥିଲା ଏବଂ ଏହି ଅନୁଷ୍ଠାନର ଶୃଙ୍ଖଳାଗତ କାର୍ଯ୍ୟପ୍ରଣାଳୀ ତଥା ଆଭିମୁଖ୍ୟ ସମ୍ପର୍କରେ ଏକ ଇସ୍ତାହାର ପ୍ରକାଶ କରାଯାଇଥିଲା । ଏହି ଇସ୍ତାହାରରେ କୁହାଯାଇଥିଲା ଯେ- ବଙ୍ଗଳା, ବମ୍ବେ ଓ ମାନ୍ଦ୍ରାଜ ପ୍ରେସିଡେନ୍‌ସୀର ଯେଉଁ ବିଶିଷ୍ଟ ରାଜନୈତିକ ବ୍ୟକ୍ତିମାନେ ଇଂରାଜୀ ଭାଷାରେ ପାରଦର୍ଶୀ ସେହିମାନଙ୍କୁ ନେଇ ଏହି ଅଧିବେଶନ ଅନୁଷ୍ଠିତ ହେବ ଏବଂ ଏଥିରେ ଜାତୀୟ ପ୍ରଗତି ଉଦ୍ଦେଶ୍ୟରେ କାର୍ଯ୍ୟରତ ଲୋକଙ୍କ ମଧ୍ୟରେ ସମ୍ପର୍କ ସ୍ଥାପନ ସହିତ ଆଗାମୀ ବର୍ଷ ନିଆଯିବାକୁ ଥିବା ରାଜନୈତିକ କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା କରି ସିଦ୍ଧାନ୍ତ ଗ୍ରହଣ କରାଯିବ ।

ଏହି ସମୟାରେ ଓଡ଼ିଶା ସେତେବେଳେ ବଙ୍ଗଳା ପ୍ରେସିଡେନ୍‌ସୀ ଅଧୀନରେ ଥିବା ହେତୁ ତଥା ଇଣ୍ଡିଆନ୍ ଆସୋସିଏସନ୍ ଦ୍ୱାରା ବଙ୍ଗଳାରେ ଗଠିତ ନ୍ୟାସନାଲ କନଫେରେନ୍ସ ସହିତ 'ଉତ୍କଳ ସଭା'ର ଯୋଗସୂତ୍ର ରହିଥିବା ଯୋଗୁ ମଧୁସୂଦନ ଓଡ଼ିଶା ପକ୍ଷରୁ ଜାତୀୟ ସ୍ତରରେ ପ୍ରତିନିଧିତ୍ୱ କରିଥିଲେ । ଜାତୀୟ କଂଗ୍ରେସର ବମ୍ବେ ଅଧିବେଶନରେ ଯେଉଁ ସବୁ ପ୍ରସ୍ତାବ ଗୃହୀତ ହୋଇଥିଲା ତାହା ଉପରେ ବିଚାର ବିମର୍ଶ କରିବା ପାଇଁ ୧୮୮୬ ମସିହା ମାର୍ଚ୍ଚ ୩ ତାରିଖ ଦିନ କଟକ ପ୍ରିଣ୍ଟିଂ କମ୍ପାନୀ ହତାରେ ମଧୁସୂଦନଙ୍କ ସଭାପତିତ୍ୱରେ ଗୋଟିଏ ସଭାର ଆୟୋଜନ କରାଯାଇଥିଲା । ଏସବୁ କରିବା ପଛରେ ମଧୁସୂଦନଙ୍କର କେବଳ ଗୋଟିଏ ଲକ୍ଷ୍ୟ ଥିଲା - ଜାତୀୟ ସ୍ତରରେ ଯେଉଁ ରାଜନୈତିକ ଜାଗରଣ ସୃଷ୍ଟି ହୋଇଛି ଓଡ଼ିଶାବାସୀଙ୍କୁ ସେଥିରେ ସାମିଲ କରେଇବା । ଖାସ୍ ଏହି ଲକ୍ଷ୍ୟ ପୂରଣ କରିବା ପାଇଁ ବମ୍ବେ ଅଧିବେଶନର ପ୍ରସ୍ତାବଗୁଡ଼ିକୁ ସର୍ବସମ୍ମତି କ୍ରମେ 'ଉତ୍କଳ ସଭା' ଗ୍ରହଣ କରିଥିଲା ।

ଉତ୍କଳର ଜନସାଧାରଣଙ୍କର ଟିକିନିଖି ଖବରକୁ ଜାତୀୟ ସ୍ତରରେ ଉପସ୍ଥାପିତ କରିବା ଦିଗରେ ମଧୁସୂଦନଙ୍କର ଭୂମିକା ଥିଲା ପ୍ରଶଂସନୀୟ । ସେଥିପାଇଁ ସେ ବହୁ

ଝଡ଼ଝଞ୍ଜା, ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ମଧ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଟି ଅଧିବେଶନରେ ଯୋଗ ଦେଉଥିଲେ ।

୧୮୮୭ ମସିହାରେ ଜାତୀୟ କଂଗ୍ରେସର ତୃତୀୟ ଅଧିବେଶନ ମାନ୍ଦ୍ରାଜ ଠାରେ ଅନୁଷ୍ଠିତ ହେବାର କାର୍ଯ୍ୟକ୍ରମ ଥିଲା । ସେତେବେଳକୁ ମାନ୍ଦ୍ରାଜ ସହିତ ଓଡ଼ିଶାର ରେଳ ଯୋଗାଯୋଗ ସ୍ଥାପିତ ହୋଇ ନ ଥିଲା । ଯିବା ପାଇଁ କେବଳ ଗୋଟିଏ ମାର୍ଗ- ଜଳପଥ ! ତାହା ପୁଣି ସାତଦିନର ସମୁଦ୍ର ଯାତ୍ରା । ଏହି ସମସ୍ୟା କିନ୍ତୁ ମଧୁସୂଦନଙ୍କୁ ତାଙ୍କ ନିଷ୍ପତ୍ତି ପଥରୁ ବିଚ୍ୟୁତ କରି ପାରି ନ ଥିଲା । ସମସ୍ତ ଅସୁବିଧା ସତ୍ତ୍ୱେ 'ଉତ୍କଳ ସଭା'ର ପ୍ରତିନିଧି ଭାବରେ ମଧୁସୂଦନ ଓ ଗୌରୀଶଙ୍କର ମାନ୍ଦ୍ରାଜ ଅଧିବେଶନରେ ଯୋଗ ଦେଇଥିଲେ ।

'ଉତ୍କଳ ଦୀପିକା' ପ୍ରଦତ୍ତ ତଥ୍ୟ ଅନୁଯାୟୀ - ମାନ୍ଦ୍ରାଜରୁ ଫେରିବା ପରେ ମଧୁସୂଦନ ଏବଂ ଗୌରୀଶଙ୍କରଙ୍କୁ ସମ୍ମାନ ଜଣାଇବା ନିମନ୍ତେ କଟକ ପ୍ରିଣ୍ଟିଂ କମ୍ପାନୀ ହତାରେ ସର୍ବସାଧାରଣଙ୍କ ପକ୍ଷରୁ ଏକ ସମ୍ବର୍ଦ୍ଧନା ସଭାର ଆୟୋଜନ କରାଯାଇଥିଲା । ମୁଖ୍ୟବକ୍ତା ଭାବରେ ମଧୁସୂଦନ ଏହି ସଭାରେ ଭାଷଣ ଦେଇ ହିନ୍ଦୁ-ମୁସଲମାନ ଏକତା ଉପରେ ଗୁରୁତ୍ୱାରୋପ କରିଥିଲେ । କାରଣ ସେତେବେଳକୁ ଭାରତୀୟ ରାଜନୀତିରେ ସାମ୍ପ୍ରଦାୟିକତାର ନିଆଁ ଜୋର୍ ଧରି ସାରିଥିଲା ।

ସାଧାରଣ ଲୋକଙ୍କ ମଧରେ କଂଗ୍ରେସର ବାର୍ତ୍ତା ପ୍ରଚାର କରିବା ନିମନ୍ତେ ମଧୁସୂଦନଙ୍କ ଅକ୍ଳାନ୍ତ ପରିଶ୍ରମ ଚିରଦିନ ଲାଗି ସ୍ମରଣୀୟ ହୋଇ ରହିବ । ମାନ୍ଦ୍ରାଜ ଅଧିବେଶନରେ ଗୃହୀତ ପ୍ରସ୍ତାବର ତାତ୍ପର୍ଯ୍ୟ ସାଧାରଣ ଲୋକଙ୍କ ନିକଟରେ ପହଞ୍ଚାଇବାକୁ ୧୮୮୮ ମସିହା ଫେବୃଆରୀ ମାସ ୧୬ ତାରିଖରେ କଟକର ମ୍ୟୁନିସପାଲିଟି ମାର୍କେଟ ପଡ଼ିଆ ଠାରେ ସେ ଏକ ବିରାଟ ସାଧାରଣ ସଭାର ଆୟୋଜନ କରାଇଥିଲେ । ଏତଦ୍‌ବ୍ୟତୀତ, ମଧୁସୂଦନ ନିଜେ କେନ୍ଦ୍ରାପଡ଼ା ସବ୍ ଡିଭିଜନ୍‌ର ଗାଁଗଣ୍ଡା ବୁଲି ଜାତୀୟ କଂଗ୍ରେସରେ ଯୋଗ ଦେବା ନିମନ୍ତେ ଲୋକମାନଙ୍କୁ ପ୍ରବର୍ତ୍ତାଇ ଥିଲେ ।

ସେହିବର୍ଷ ଅକ୍ଟୋବର ୬ ତାରିଖ ଦିନ ଆୟୋଜିତ ଏକ ସଭାରେ 'ଉତ୍କଳ ସଭା'କୁ ନିଖିଳ ଭାରତ ଜାତୀୟ କଂଗ୍ରେସର ଏକ ଶାଖା ଭାବରେ ସର୍ବସମ୍ମତି କ୍ରମେ ଗ୍ରହଣ କରାଯାଇଥିଲା । ଏହା ଓଡ଼ିଶାର ପ୍ରଥମ ପ୍ରାଦେଶିକ କଂଗ୍ରେସ କମିଟି ଥିଲା ଏବଂ ମଧୁସୂଦନ ଏହାର ଆଦିପିତା ଓ ପଥ ପ୍ରଦର୍ଶକ ଥିଲେ ।

# ଗାନ୍ଧୀଙ୍କଠୁ ଆଗରେ

୧୯୩୦ ମସିହା ମାର୍ଚ୍ଚ ମାସ ୧୨ ତାରିଖରେ ମହାତ୍ମା ଗାନ୍ଧୀ ୭୮ ଜଣ ସତ୍ୟାଗ୍ରହୀଙ୍କୁ ନେଇ ଦାଣ୍ଡି ଠାରେ 'ଲବଣ ସତ୍ୟାଗ୍ରହ' ଆରମ୍ଭ କରିଥିଲେ । ଏହାପରେ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ସାରା ଦେଶର ଜନସାଧାରଣ ଏହି ଆନ୍ଦୋଳନରେ ଝାସ ଦେଇଥିଲେ । ମାତ୍ର ଏହାର ୪୭ ବର୍ଷ ପୂର୍ବେ ଅର୍ଥାତ୍ ୧୮୮୩ ମସିହାରେ ମଧୁସୂଦନ ଓଡ଼ିଶାରେ ଲବଣ ଆନ୍ଦୋଳନ ଆରମ୍ଭ କରିଥିଲେ ।

ଭାରତର କେତେକ ରାଜ୍ୟ ସମୁଦ୍ର ଉପକୂଳରେ ଅବସ୍ଥିତ । ସେହିସବୁ ଉପକୂଳ ଅଞ୍ଚଳର ଲୋକମାନଙ୍କର ମୁଖ୍ୟ ଜୀବିକା ଲୁଣମରା । ସେମାନେ ସମୁଦ୍ର ଜଳରୁ ଲୁଣ ମାରି ତାହାକୁ ବଜାରରେ ବିକ୍ରି କରି ନିଜର ଗୁଜୁରାଣ ମେଣ୍ଟାଉଥିଲେ । ଏହା ଦେଖି ଇଂରେଜ ସରକାର ସମୁଦ୍ର-ପାଣିରୁ ଲୁଣ ମାରିବା ଉପରେ କଟକଣା ଜାରି କଲେ ଏବଂ ତାହା ଉପରେ 'ଲବଣ କର' ବସାଇଲେ । ଏଥିରୁ ଇଂରେଜ ସରକାରଙ୍କୁ ପ୍ରଚୁର ଟିକସ ମିଳୁଥିଲା । ସର୍ବପ୍ରଥମେ ଓଡ଼ିଶାର ଇତିହାସ ସଂକଳନ କରିଥିବା ଐତିହାସିକ ଆଣ୍ଡ୍ରୁ ଷ୍ଟର୍ଲିଂ ଏଥିନେଇ ଯେଉଁ ବିବରଣୀ ଦେଇଥିଲେ ତାହାକୁ ଆଧାର କରି କଟକର ତତ୍କାଳୀନ 'ଡିଷ୍ଟ୍ରିକ୍ଟ ଗେଜେଟିଅର' ମ୍ୟାଲେ ସାହେବ ଉଲ୍ଲେଖ କରିଥିଲେ ଯେ,ଉପକୂଳବର୍ତ୍ତୀ ଅଞ୍ଚଳଗୁଡିକ ଖୁବ୍ ଦୁର୍ଗମ ଏବଂ ସେଠାର ପରିବେଶ ଅତ୍ୟନ୍ତ ଅସାସ୍ଥ୍ୟକର ଥିଲା । ମାତ୍ର ସେତେବେଳେ ସମଗ୍ର ଭାରତବର୍ଷରେ ସେଇ ସବୁ ସ୍ଥାନରୁ ହିଁ ସର୍ବୋତ୍କୃଷ୍ଟ ଲୁଣ ଉତ୍ପାଦନ କରାଯାଉଥିଲା । ଓଡ଼ିଶାର ଇଷ୍ଟ ଇଣ୍ଡିଆ କମ୍ପାନୀ ସରକାର ସେଥିରୁ ବର୍ଷକୁ ୧୮ ଲକ୍ଷ ଟଙ୍କାର ରାଜସ୍ୱ ପାଉଥିଲେ ।

କିନ୍ତୁ କମ୍ପାନୀ ସରକାର ପ୍ରଚୁର ଲାଭ ପାଉଥିଲେ ମଧ ଓଡ଼ିଶାର ଗରିବ ଲୋକେ ଲୁଣ ଅଭାବରୁ ନାହିଁ ନ ଥିବା ଅସୁବିଧା ଭୋଗୁଥିଲେ । ଆଧୁନିକ ଓଡ଼ିଶାର ଅନ୍ୟତମ ବିନ୍ଧାଣୀ ତଥା ଓଡ଼ିଆ ଗଳ୍ପ ଉପନ୍ୟାସର ଜନକ ବ୍ୟାସକବି ଫକୀର ମୋହନ ସେନାପତି ତାଙ୍କ ଆତ୍ମଚରିତରେ ଏ ବିଷୟଟିକୁ ମନକୁ ଛୁଇଁବା ଭଳି ଭାଷାରେ ବର୍ଣ୍ଣନା କରିଛନ୍ତି । ଯେମିତିକି- "ଲୁଣ ଉତ୍ପାଦନକାରୀଙ୍କଠୁ ସରକାର ମହଣେ ଲୁଣକୁ ୫ ଅଣା ବା ୩୦ ପଇସା ଦରରେ କିଣିନେଇ ସେହି ଲୁଣକୁ ମହଣକ ୨ ଟଙ୍କା ଦରରେ ଲୋକମାନଙ୍କୁ ବିକ୍ରି କରୁଥିଲେ । ସେତେବେଳେ ଲୁଣ ବିକ୍ରୟ ଉପରେ ଇଂରେଜ ସରକାରଙ୍କର ଏକଚାଟିଆ ବାଣିଜ୍ୟିକ ଅଧିକାର ଥିଲା । ଫଳରେ ଦେଶୀ

ପଙ୍ଗା ଲୁଣର ମୂଲ୍ୟ ବଢ଼ିଗଲା । ଏହାଦ୍ୱାରା ଓଡ଼ିଶାର ସ୍ଥାନୀୟ ଲୁଣ ଉତ୍ପାଦନକାରୀ ଏବଂ ଗରିବ ଲୋକେ ନାହି ନ ଥିବା ଅସୁବିଧାରେ ପଡିଲେ । ଯେଉଁମାନେ ପଇସା ଦେଇ ଲୁଣ କିଣି ପାରୁ ନ ଥିଲେ ସେମାନେ ସମୁଦ୍ର ପାଣି ମାଡ଼ି ଆସୁଥିବା ଜମିର ମାଟିକୁ ଲୁଣ ରୂପେ ବ୍ୟବହାର କରୁଥିଲେ ଏବଂ ସମୁଦ୍ର ଠୁ ଦୂରରେ ଥିବା ଗାଁଗଣ୍ଡାର ଲୋକମାନେ ଲଟାପତ୍ର ପୋଡ଼ି ତାହାର ଖାରକୁ ଲୁଣ ଭଳି ବ୍ୟବହାର କରୁଥିଲେ ।"

ସେତିକିରେ ଓଡ଼ିଶାବାସୀଙ୍କ ଦୁର୍ଦ୍ଦଶା ଶେଷ ହେଲାନାହିଁ । ଠିକ୍ ଏତିକିବେଳେ ଇଂରେଜ ସରକାର 'ଲବଣ ବିଭାଗ'ଟିକୁ ମାନ୍ଦ୍ରାଜ ସରକାରଙ୍କ ଅଧୀନକୁ ଦେଇଦେଲେ । ଏହା ପଛରେ ଅବଶ୍ୟ ଯଥେଷ୍ଟ କାରଣ ରହିଥିଲା । ପ୍ରଥମତଃ ମାନ୍ଦ୍ରାଜ ଲୁଣଠାରୁ ଓଡ଼ିଶାର ଲୁଣ ଉଚ୍ଚମାନର ଥିଲା ଓ ଶସ୍ତାରେ ମିଳୁଥିଲା । ତେଣୁ ଲୁଣ କମ୍ପାନୀମାନେ ସେହି ଲୁଣକୁ ଆଣି ଓଡ଼ିଶା ବଜାରରେ ବିକ୍ରି କରୁଥିଲେ ଓ ଓଡ଼ିଶାର ଲୁଣକୁ ରାଜ୍ୟ ବାହାରକୁ ଚୋରାରେ ଚାଲାଣ କରୁଥିଲେ । ଏହାଦ୍ୱାରା କମ୍ପାନୀ ସରକାରଙ୍କର ରାଜସ୍ୱ ହାନି ଘଟୁଥିଲା । ସେଇଥିପାଇଁ କମ୍ପାନୀ ସରକାର ଓଡ଼ିଶାର ଲୁଣ ଉତ୍ପାଦନ, ନିୟନ୍ତ୍ରଣ ଏବଂ ପରିଚାଳନା ଦାୟିତ୍ୱ ସମ୍ପୂର୍ଣ୍ଣ ଭାବରେ ମାନ୍ଦ୍ରାଜ ସରକାରଙ୍କୁ ଦେଇଦେଲେ । ତେବେ ଏସବୁ ଘଟଣାରେ ଓଡ଼ିଶାବାସୀ ସବୁଠୁ ବେଶୀ କ୍ଷତିଗ୍ରସ୍ତ ହେଲେ । ସମୁଦ୍ରରୁ ଲୁଣ ମାରି ଜୀବିକା ନିର୍ବାହ କରୁଥିବା ଓଡ଼ିଶାର ହଜାର ହଜାର ପରିବାର ତଳିତଳାନ୍ତ ହୋଇଗଲେ । ଏହି କାରଣରୁ ଓଡ଼ିଶାରେ କମ୍ପାନୀ ସରକାର ବିରୁଦ୍ଧରେ ମଧୁସୂଦନଙ୍କ ନେତୃତ୍ୱରେ ତୀବ୍ର ଜନ ଆନ୍ଦୋଳନ ସୃଷ୍ଟି ହେଲା ।

୧୮୮୮ ମସିହାରେ କଂଗ୍ରେସର ଅଧିବେଶନ ଆହ୍ଲାବାଦ ଠାରେ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ଇଂରେଜ ସରକାରଙ୍କ ଲବଣ ଟିକସ ବୃଦ୍ଧିକୁ କଠୋର ଭାବରେ ସମାଲୋଚନା କରାଯିବା ସହିତ ବିରୋଧ ମଧ କରାଯାଇଥିଲା । ଏହି ଅଧିବେଶନରୁ ଫେରି ମଧୁସୂଦନ କଟକ ମ୍ୟୁନିସିପାଲିଟି ମାର୍କେଟ ଠାରେ ଉତ୍କଳ ସଭା ପକ୍ଷରୁ ଏକ ବିଶାଳ ସାଧାରଣ ସଭାର ଆୟୋଜନ କରିଥିଲେ । ଏଥିରେ ଭାଷଣ ଦେଇ ମଧୁସୂଦନ କହିଥିଲେ ଯେ, ଓଡ଼ିଶାର ଲବଣ ବିଭାଗକୁ ମାନ୍ଦ୍ରାଜ ସରକାରଙ୍କ ଅଧୀନରୁ ବଙ୍ଗଳା ସରକାରଙ୍କ ହାତକୁ ଆଣିବା ପାଇଁ ପଡିବ । ଏହା ହୋଇ ପାରିଲେ ଓଡ଼ିଶାରେ ଲବଣ ଶିଳ୍ପର ପୁନର୍ଜାଗରଣ କରାଯାଇ ପାରିବ ଏବଂ ଓଡ଼ିଶାର ଲୋକମାନଙ୍କର ଆର୍ଥିକ ସଚ୍ଛଳତା ଫେରାଇ ଆଣିହେବ ।

ମଧୁସୂଦନ ଖାଲି ଏହା କଥାରେ କହିଲେ ନାହିଁ, କାମରେ ମଧ୍ୟ ଆରମ୍ଭ କଲେ । ୧୮୯୬ ମସିହାରେ ବଙ୍ଗଳା ଲେଜିସ୍‌ଲେଟିଭ୍ କାଉନସିଲ୍‌ରେ ମଧୁସୂଦନ ଓଡିଶାରେ ଲବଣ ଶିଳ୍ପର ଅଧୋଗତି ଓ ତଦ୍ୱାରା ଗରିବ ଲୋକମାନଙ୍କର ଦୁରବସ୍ଥା ସମ୍ପର୍କରେ ବର୍ଣ୍ଣନା କରି ଅଗ୍ନିବର୍ଷୀ ଭାଷଣ ଦେଇଥିଲେ । ଏହା ଏତେ ହୃଦୟସ୍ପର୍ଶୀ ଥିଲା ଯେ, ତାହାର ଉତ୍ତରରେ ସରକାରଙ୍କର ପ୍ରତିନିଧି (ଗଭର୍ଣ୍ଣମେଣ୍ଟ ମେମ୍ବର) ମିଃ. ରିସ୍‌ଲେ ସେହି କାଉନସିଲରେ କହିଥିଲେ- " ଓଡ଼ିଶାର ଲବଣ ବିଭାଗଟିକୁ ମାନ୍ଦ୍ରାଜରୁ ବଙ୍ଗଳାକୁ ନେଇ ଆସିବା ପାଇଁ ଏବେ ଭାରତ ସରକାରଙ୍କ ସହ ଆଲୋଚନା କରାଯାଉଛି । ସେହିଭଳି ଲବଣ ଆଇନ୍‌କୁ ସଂଶୋଧନ କରିବା ବିଷୟ ନେଇ ମଧ୍ୟ ବିଚାର ଆଲୋଚନା କରାଯାଉଛି ।"

ସତକୁସତ ମଧୁସୂଦନଙ୍କର ଅକ୍ଲାନ୍ତ ପରିଶ୍ରମ ଶେଷରେ ସାର୍ଥକ ହେଲା । ଓଡ଼ିଶାର ଲବଣ ବିଭାଗ ବଙ୍ଗଳା ସରକାରଙ୍କ ତତ୍ତ୍ୱାବଧାନକୁ ଆସିଲା ।

## ସମ୍ବଲପୁର ମିଶ୍ରଣ

୧୮୯୫ ମସିହା ଜାନୁଆରୀ ମାସ ୨୫ ତାରିଖରେ ମଧ୍ୟପ୍ରଦେଶର ସରକାରୀ ଗେଜେଟ୍ ପ୍ରକାଶ ପାଇଲା । ଏଥିରେ ଉଲ୍ଲେଖ ଥିଲା ଯେ, ୧୮୯୬ ମସିହାର ଆରମ୍ଭରୁ ସମ୍ବଲପୁରରେ ଥିବା କୋର୍ଟ କଚେରୀ ଓ ସରକାରୀ କାର୍ଯ୍ୟାଳୟମାନଙ୍କରେ ଓଡ଼ିଆ ଭାଷା ବଦଳରେ ହିନ୍ଦି ଭାଷା ପ୍ରଚଳିତ ହେବ । ସମ୍ବଲପୁର ଡିଭିଜନ୍‌ର ଚିଫ୍ କମିଶନର ସାର ଆଣ୍ଡ୍ରୁ ଫ୍ରେଜରଙ୍କ ନିଷ୍ପତ୍ତିକ୍ରମେ ଏଭଳି ଏକ ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା । ଏ ସମ୍ପର୍କରେ ସ୍ପଷ୍ଟୀକରଣ ଦିଆଯାଇ କୁହାଯାଇଥିଲା ଯେ, ସମ୍ବଲପୁରର କୋର୍ଟ କଚେରୀ ଓ ସରକାରୀ କାର୍ଯ୍ୟାଳୟ ମାନଙ୍କରେ ଓଡ଼ିଆ ଭାଷା ପ୍ରଚଳିତ ହେଉଥିବା ହେତୁ ସେ ଜିଲ୍ଲାରେ ପୋଲିସ୍ କର୍ମଚାରୀ ମାନଙ୍କର ନିଯୁକ୍ତି ଓ ବଦଳି ଆଦି କରାଯିବାରେ ନାନାଦି ଅସୁବିଧା ସୃଷ୍ଟି ହେଉଛି । ସେଥିପାଇଁ ସେହିସବୁ ସ୍ଥାନରେ ଓଡ଼ିଆ ଭାଷାକୁ ହଟେଇ ହିନ୍ଦୀ ଭାଷାର ପ୍ରବର୍ତ୍ତନ କରାଯାଇଛି ।

ମଧ୍ୟପ୍ରଦେଶର ଏହି ସରକାରୀ ଗେଜେଟ୍ ଘୋଷଣା ଓଡ଼ିଶା ସହିତ ସମ୍ବଲପୁରର ମିଶ୍ରଣ ନେଇ ସ୍ୱପ୍ନ ଦେଖୁଥିବା ଲୋକମାନଙ୍କୁ ଗଭୀର ଆଘାତ ଦେଇଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ସତତ

ସଂଗ୍ରାମ ଚଳାଇ ରଖିଥିବା ମଧୁସୂଦନଙ୍କ ପାଇଁ ତ ଏହା ଦାରୁଣ ଆଘାତ ଆଣି ଦେଇଥିଲା । କାରଣ ୧୮୮୮ ମସିହା ଡିସେମ୍ବର ମାସରେ ବଙ୍ଗଳା ଡିଭିଜନ୍‌ର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର ଷ୍ଟୁଆର୍ଟ ବେଲୀ କଟକ ଆସିଥିବା ସମୟରେ ମଧୁସୂଦନ ଉତ୍କଳ ସଭା ପକ୍ଷରୁ ତାଙ୍କ ନିକଟରେ ଏକ ଗୁରୁତ୍ୱପୂର୍ଣ୍ଣ ଦାବିପତ୍ର ଉପସ୍ଥାପନ କରିଥିଲେ । ବିଭିନ୍ନ ସ୍ଥାନରେ ପୃଥକ୍ ହୋଇ ରହିଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ଏକତ୍ରିକରଣ ପାଇଁ ଏହି ଦାବିପତ୍ରରେ ଅନୁରୋଧ କରାଯାଇଥିଲା । ଏହିସବୁ ଅଞ୍ଚଳ ମଧ୍ୟରେ ସମ୍ବଲପୁର ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ମାତ୍ର ମଧ୍ୟପ୍ରଦେଶ ସରକାରୀ ଗେଜେଟ୍‌ର ଘୋଷଣା ପରେ ସମ୍ବଲପୁର ଯେ ସବୁଦିନ ଲାଗି ଓଡ଼ିଶାରୁ ବିଚ୍ଛିନ୍ନ ହୋଇଯିବ ଏହା ଏକ ପ୍ରକାର ସ୍ପଷ୍ଟ ହୋଇଗଲା ।

ଏହି ସମୟରେ ଆଉ ଏକ ଉଲ୍ଲେଖନୀୟ ଘଟଣା ଘଟିଲା ଯାହା ଓଡ଼ିଶାବାସୀଙ୍କ ପାଇଁ ଆଶୀର୍ବାଦ ସଦୃଶ ଥିଲା । ୧୮୯୬ ମସିହାରେ ମଧୁସୂଦନ ଓଡ଼ିଶା ଓ ଛୋଟନାଗପୁର ମ୍ୟୁନିସପାଲ ନିର୍ବାଚନ ମଣ୍ଡଳୀରୁ ବଙ୍ଗଳା ଲେଜିସ୍‌ଲେଟିଭ୍ କାଉନ୍‌ସିଲକୁ ସଭ୍ୟ ରୂପେ ନିର୍ବାଚିତ ହେଲେ । ସେ ପ୍ରଥମ ଓଡ଼ିଆ ନିର୍ବାଚିତ ଲୋକ ପ୍ରତିନିଧି ଥିଲେ । ବଙ୍ଗଳା ଲେଜିସ୍‌ଲେଟିଭ୍ କାଉନସିଲ୍‌ର ସଭ୍ୟ ହେବା ପରେ ସେ ଓଡ଼ିଶା ସହିତ ସମ୍ବଲପୁରର ମିଶ୍ରଣ ନେଇ ଗୁରୁତ୍ୱର ସହିତ ଚିନ୍ତା କରିବାକୁ ଲାଗିଲେ । ଏହି ଅଭିପ୍ରାୟ ନେଇ ସେ ପ୍ରଥମଥର ପାଇଁ ୧୮୯୭ ମସିହାରେ ଲଣ୍ଡନ ଯାତ୍ରା କଲେ ।

ସେତେବେଳେ ଲଣ୍ଡନ 'ବ୍ରିଟିଶ୍ କଂଗ୍ରେସ କମିଟି'ର ସର୍ବୋଚ୍ଚ କର୍ମକର୍ତ୍ତା ଥାନ୍ତି ସାର ଓ୍ୱିଲିୟମ ଓ୍ୱେଡରବର୍ଣ୍ଣ । ମଧୁସୂଦନ ଓ୍ୱେଡରବର୍ଣ୍ଣ ସାହେବଙ୍କୁ ସାକ୍ଷାତ କରିବା ସହିତ ଇଣ୍ଡିଆ ହାଉସ୍‌ର ସାର୍ ଚାର୍ଲସ ଡିଲକିନ୍ ଏବଂ ସାର୍ ଜର୍ଜ ହାମିଲଟନ୍ ପ୍ରମୁଖ ପ୍ରଭାବଶାଳୀ ବ୍ୟକ୍ତିବିଶେଷଙ୍କୁ ଭେଟି ଓଡ଼ିଶା ତଥା ଓଡ଼ିଶାବାସୀଙ୍କ ଦୁଃଖ ଦୁର୍ଦ୍ଦଶା ସମ୍ପର୍କରେ ଅବଗତ କରାଇଥିଲେ । ସେତିକି ନୁହେଁ, ସେ 'ବ୍ରିଟିଶ୍ ଶାସନରେ ଓଡ଼ିଆ' ଶୀର୍ଷକରେ ଏକ ଇଂରାଜୀରେ ଲିଖିତ ପୁସ୍ତିକା ଛପାଇ ତାହାକୁ ଲଣ୍ଡନ ସହରର ବିଭିନ୍ନ ରାଜନୈତିକ ବ୍ୟକ୍ତିବୃନ୍ଦ ଏବଂ ଶାସନ କର୍ତ୍ତୃପକ୍ଷଙ୍କ ମଧ୍ୟରେ ବଣ୍ଟନ କଲେ ଏବଂ ବିଭିନ୍ନ ସ୍ଥାନରେ ଇଂରେଜ ଲୋକମାନଙ୍କୁ ଏକାଠି କରାଇ କ୍ଷୁଦ୍ର କ୍ଷୁଦ୍ର ସଭାମାନଙ୍କରେ ଭାଷଣ ଦେଇ ସେମାନଙ୍କୁ ଉଦ୍‌ବୁଦ୍ଧ କରାଇଲେ । ବ୍ରିଟିଶ ଉପନିବେଶ କବଳରେ ରହି ଓଡ଼ିଶା କିଭଳି ଶୋଷଣ ଓ ଅତ୍ୟାଚାରର ଶିକାର ହେଉଛି ତାହା ଏହି

ପ୍ରଚାରପତ୍ରରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇଥିଲା । ଓଡ଼ିଶାକୁ ନେଇ ମଧୁସୂଦନଙ୍କର ଏହି ଉଦ୍ୟମ ଲଣ୍ଡନରେ ତାଙ୍କୁ କିଛିଟା ସମବେଦନା ସଂଗ୍ରହ କରିବାରେ ସହାୟକ ହୋଇଥିଲା ।

ମାତ୍ର ଦୁର୍ଭାଗ୍ୟଜନକ ଭାବରେ ଏହାର ବର୍ଷକ ପରେ ଅର୍ଥାତ୍ ୧୮୯୮ ମସିହାରେ ସମ୍ବଲପୁରର ୮୨ଟି ଓଡ଼ିଆ ଭାଷୀ ସ୍କୁଲର ଉଚ୍ଛେଦ କରାଯିବା ସହିତ ତୃତୀୟ ଶ୍ରେଣୀରେ ହିନ୍ଦୀ ଭାଷା ପ୍ରଚଳନ କରାଯାଇଥିଲା ।

୧୮୯୯ ମସିହାରେ ଲର୍ଡ କର୍ଜନ ଭାରତର ଭାଇସ୍‌ରାୟ ଓ ଗଭର୍ଣ୍ଣର ଜେନେରାଲ ହେଲେ । ସେତେବେଳକୁ ମଧୁସୂଦନ ବଙ୍ଗଳା ଲେଜିସ୍‌ଲେଟିଭ୍ କାଉନସିଲ୍‌କୁ ଦ୍ୱିତୀୟଥର ପାଇଁ ନିର୍ବାଚିତ ହୋଇଥିଲେ । ଓଡ଼ିଆ ଭାଷାଭାଷୀ ଲୋକମାନେ କିଭଳି ବିକ୍ଷିପ୍ତ ଭାବରେ ରହୁଛନ୍ତି, ପୁଣି କିଭଳି ସମ୍ବଲପୁରରେ ଥିବା ସରକାରୀ କାର୍ଯ୍ୟାଳୟରେ ଓଡ଼ିଆ ଭାଷାକୁ ଉଠାଇ ନିଆଯିବାର ଉଦ୍ୟମ ହୋଇଛି ସେ ବିଷୟରେ ମଧୁସୂଦନ ସିମ୍‌ଲା ଠାରେ କର୍ଜନ୍‌ଙ୍କୁ ଭେଟି ଅବଗତ କରାଇବାର ପ୍ରୟାସ କଲେ । ତେବେ ସମ୍ବଲପୁର କେଉଁ କାରଣରୁ ଓଡ଼ିଶା ସହିତ ସାମିଲ ହେବ ତା'ର କୌଣସି କାରଣ ସେ ଖୋଜି ପାଉନାହାନ୍ତି ବୋଲି କର୍ଜନ ସଫାସଫା କହିଦେଲେ । ପୁଣି ଓଡ଼ିଶା ସହିତ ସମ୍ବଲପୁରର ମିଶ୍ରଣ କାର୍ଯ୍ୟ ଏତେ ଶୀଘ୍ର କିମ୍ବା ସହଜରେ ସମ୍ଭବ ନୁହେଁ ବୋଲି ଜଣେଇ ଦେଲେ । ଏହା ୧୯୦୦ ମସିହା ଅକ୍ଟୋବର ମାସର କଥା । ଅବଶ୍ୟ ମଧୁସୂଦନଙ୍କର ଭାଷାପ୍ରୀତି ତଥା ଖଣ୍ଡିତ ଓଡ଼ିଶାର ଏକତ୍ରିକରଣ ନିମନ୍ତେ ତାଙ୍କ ଭିତରେ ଥିବା ଅଦମ୍ୟ ଉତ୍ସାହ ଦେଖି ଲର୍ଡ କର୍ଜନ ଆଶ୍ଚର୍ଯ୍ୟ ଚକିତ ହୋଇ ଯାଇଥିଲେ ଏବଂ ଏଥିନେଇ କିଛି ବ୍ୟବସ୍ଥା କରିବେ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ ।

ଏହି ଅବସରରେ ମଧୁସୂଦନ କର୍ଜନଙ୍କୁ ଓଡ଼ିଶା ଆସିବା ପାଇଁ ଅନୁରୋଧ କଲେ । ସତକୁସତ ମଧୁସୂଦନଙ୍କ ଅନୁରୋଧ ରକ୍ଷା କରି ଲର୍ଡ କର୍ଜନ ସେହିବର୍ଷ ଡିସେମ୍ବର ୧୬ ତାରିଖରେ ଓଡ଼ିଶା ଆସି ଶ୍ରୀକ୍ଷେତ୍ର ପୁରୀ ତଥା ମନ୍ଦିରମାଳିନୀ ଭୁବନେଶ୍ୱରରେ ଥିବା ମନ୍ଦିର କୀର୍ତ୍ତିରାଜି ଦର୍ଶନ କରି ଅଭିଭୂତ ହୋଇ ଯାଇଥିଲେ । ତାଙ୍କ ମନରେ ଓଡ଼ିଶା ପ୍ରତି ସହାନୁଭୂତି ସୃଷ୍ଟି ହୋଇଥିଲା ଏବଂ ସେ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରିବା ଲାଗି ପ୍ରୟାସ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

କର୍ଜନ ଜଣେ ପ୍ରଚଣ୍ଡ ପ୍ରତିଭାବାନ୍ ବ୍ୟକ୍ତି ଥିଲେ । ତାଙ୍କର ବ୍ୟକ୍ତିତ୍ୱ ଭିନ୍ନ ଧରଣର ଥିଲା । ସେ ନିଜର ପ୍ରତିଶ୍ରୁତି ପାଳନ କରିବାକୁ ସଦାସର୍ବଦା ଚେଷ୍ଟା କରୁଥିଲେ । ତାଙ୍କର ଉଦ୍ୟମ ଫଳରେ ସମ୍ବଲପୁରରେ ଆରମ୍ଭ ହୋଇଥିବା ଭାଷା ଆନ୍ଦୋଳନର ପରିସମାପ୍ତି ଘଟିଲା । ୧୯୦୨ ମସିହାର ମଧ୍ୟଭାଗରେ ଲର୍ଡ କର୍ଜନ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଲାଗି ଏକ ନିର୍ଦ୍ଦେଶନାମା ଜାରି କଲେ । ୧୯୦୩ ମସିହା ଜାନୁଆରୀ ମାସ ୧ ତାରିଖରେ ଏହି ନିର୍ଦ୍ଦେଶନାମା କାର୍ଯ୍ୟକାରୀ କରାଗଲା । ଫଳରେ ସମ୍ବଲପୁରରେ ପୁଣି ଓଡ଼ିଆ ଭାଷାର ପ୍ରଚଳନ ହେଲା ।

ସେହିବର୍ଷ ଡିସେମ୍ବର ୩ ତାରିଖରେ 'ରିସ୍‌ଲେ ସର୍କୁଲାର' ପ୍ରକାଶିତ ହେଲା । ଏଥିରେ ବଙ୍ଗ ପ୍ରେସିଡେନ୍ସିକୁ ଦୁଇ ଭାଗରେ ବିଭକ୍ତ କରିବା ସହିତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ନିମନ୍ତେ ସୁପାରିଶ କରାଯାଇଥିଲା । ମାତ୍ର ଏହି ସମୟରେ କର୍ଜନ୍‌ଙ୍କ ପତ୍ନୀ ଅସୁସ୍ଥ ହୋଇ ପଡିବାରୁ ସେ ଏକବର୍ଷ କାଳ ଛୁଟିରେ ଚାଲିଗଲେ । ଫଳରେ ରିସ୍‌ଲେ ସର୍କୁଲାର ସୁପାରିଶ କାର୍ଯ୍ୟକାରୀ ହେବାରେ ବିଳମ୍ବ ଘଟିଲା । ମାତ୍ର ୧୯୦୫ ମସିହାରେ କର୍ଜନ ପୁନଃ ପ୍ରତ୍ୟାବର୍ତ୍ତନ କରି ରିସ୍‌ଲେ ସର୍କୁଲାର ସଂଯୋଜନା ସବୁକୁ ବିଧିବଦ୍ଧ ଭାବରେ ସରକାରୀ ପ୍ରସ୍ତାବ ରୂପେ ଗୃହୀତ କରାଇଲେ ଏବଂ ତାହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ସେପ୍ଟେମ୍ବର ମାସ ୧୬ ତାରିଖରେ ଏକ ନିର୍ଦ୍ଦେଶନାମା ଜାରି କଲେ ।

ଏହି ନୂତନ ନିର୍ଦ୍ଦେଶାବଳୀରେ କୁହାଯାଇଥିଲା ଯେ, ବଙ୍ଗ ପ୍ରଦେଶର ଚଟ୍ଟଗ୍ରାମ, ଢାକା, ରାଜସାହି ଅଞ୍ଚଳ ଆସାମ ସହିତ ସାମିଲ ହୋଇ ପୂର୍ବ ବଙ୍ଗ ଓ ଆସାମ ପ୍ରଦେଶ ଗଠିତ ହେବ । ପଶ୍ଚିମବଙ୍ଗ ପ୍ରଦେଶର ସରଗୁଜା, ଯଶପୁର, ଉଦୟପୁର, କୋରିଆ ଏବଂ ଚଙ୍ଗଭରକର ଅଞ୍ଚଳ ଗୁଡିକ ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନରେ ମିଶିବ । ସେହିଭଳି ସମ୍ବଲପୁର, କଳାହାଣ୍ଡି, ପାଟନା, ସୋନପୁର, ବାମଣ୍ଡା, ରେଢ଼ାଖୋଲ ଏବଂ ଛୋଟନାଗପୁର ଡିଭିଜନର ଗାଙ୍ଗପୁର ତଥା ବଣାଇ ଗଡ଼ଜାତ ଅଞ୍ଚଳ ଆସି ଓଡ଼ିଶା ଡିଭିଜନ୍‌ରେ ସାମିଲ ହେବ ।

ଶେଷରେ ୧୯୦୫ ମସିହା ଅକ୍ଟୋବର ୧୬ ତାରିଖ ଦିନ ସମ୍ବଲପୁର ସମେତ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଓଡ଼ିଶା ସହିତ ସାମିଲ ହୋଇଥିଲା ।

# ଉତ୍କଳ ସମ୍ମିଳନୀ

୧୮୮୭ ମସିହାରେ ସୁରେନ୍ଦ୍ର ନାଥ ବାନାର୍ଜୀ ବେଙ୍ଗଲରେ 'ବେଙ୍ଗଲ ନ୍ୟାସନାଲ୍ କନଫରେନ୍ସ' ନାମରେ ଏକ ସଂଗଠନ ପ୍ରତିଷ୍ଠା କରିଥିଲେ । ତତ୍କାଳୀନ ବଙ୍ଗ ପ୍ରଦେଶରେ ଏହା ସବୁଠାରୁ ଶକ୍ତିଶାଳୀ ରାଜନୈତିକ ସଂଗଠନ ଥିଲା । ବଙ୍ଗ ପ୍ରଦେଶର ନାନାଦି ସମସ୍ୟା ତଥା ବଙ୍ଗଳା ଭାଷାଭାଷୀ ଲୋକମାନଙ୍କର ସମସ୍ତ ପ୍ରକାର ସୁବିଧା ଅସୁବିଧା ଦୂର କରିବାରେ ଏହି ସଂଗଠନ ସେତେବେଳେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ମଧୁସୂଦନ ଭଲ ଭାବରେ ବୁଝି ସାରିଥିଲେ ଯେ ଯେତେବେଳ ଯାଏ ଗୋଟିଏ ଜାତିର ଜାତୀୟ ଜୀବନ ବିକଶିତ ନ ହୋଇଛି ସେତେବେଳ ଯାଏ ସେହି ଜାତିର ସର୍ବାଙ୍ଗୀନ ବିକାଶ କେବେ ବି ସମ୍ଭବ ନୁହେଁ । ସେଥିପାଇଁ ସେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କ 'ବେଙ୍ଗଲ ନ୍ୟାସନାଲ କନଫରେନ୍ସ' ଅନୁରୂପ ଓଡ଼ିଶାରେ ଏକ ଅନୁଷ୍ଠାନ ଗଠନ କରିବାକୁ ଚିନ୍ତା କରୁଥିଲେ । ଅବଶ୍ୟ ସେତେବେଳକୁ 'ଉତ୍କଳ ସଭା' ବେଶ ପରିଚିତ ହୋଇ ସାରିଥିଲା । କିନ୍ତୁ ତାହାର କାର୍ଯ୍ୟ ପରିସର ସେଭଳି ବ୍ୟାପକ ନଥିଲା । ତାହା କେବଳ କଟକ ଜିଲ୍ଲା ମଧ୍ୟରେ ହିଁ ସୀମିତ ହୋଇ ରହିଥିଲା । ଏଥିରେ ସମଗ୍ର ଓଡ଼ିଶା ଅର୍ଥାତ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକମାନେ ଯୋଗ ଦେଇ ପାରୁ ନ ଥିଲେ କି ସେମାନଙ୍କର ଦୁଃଖ, ଦୁର୍ଦ୍ଦଶା, ସମସ୍ୟା ବିଷୟରେ ଜାଣି ହେଉ ନ ଥିଲା ।

ଅପରପକ୍ଷରେ, ସୁରେନ୍ଦ୍ର ନାଥ ବାନାର୍ଜୀ ମଧ ଆଞ୍ଚଳିକ ସଂଗଠନ ପ୍ରତିଷ୍ଠା ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ଏକଦା ସେ କହିଥିଲେ ଯେ, ଯେତେବେଳ ଯାଏ ଆଞ୍ଚଳିକ ସମସ୍ୟାଗୁଡିକ ଜାତୀୟ ସମସ୍ୟା ରୂପେ ବିବେଚିତ ନ ହୋଇଛି, ସେତେବେଳ ଯାଏ ତାହା 'ଭାରତୀୟ ଜାତୀୟ କଂଗ୍ରେସ' କାର୍ଯ୍ୟସୂଚୀରେ ସ୍ଥାନ ପାଇ ପାରିବ ନାହିଁ କିମ୍ବା ସେ ବିଷୟରେ ସର୍ବଭାରତୀୟ ସ୍ତରର ଅଧିବେଶନମାନଙ୍କରେ ଆଲୋଚନା ହୋଇ ପାରିବ ନାହିଁ ।

ସୁରେନ୍ଦ୍ର ନାଥ ବାନାର୍ଜୀଙ୍କର ଏହି ମନ୍ତବ୍ୟ ଅନୁଧ୍ୟାନ କରି ମଧୁସୂଦନଙ୍କ ହୃଦ୍‌ବୋଧ ହୋଇଥିଲା ଯେ, ଓଡ଼ିଶାର ସମସ୍ୟାଗୁଡ଼ିକୁ ସର୍ବଭାରତୀୟ ସ୍ତରରେ ପହଞ୍ଚାଇବା ଭଳି ଏକ ସଂଗଠନର ଆବଶ୍ୟକତା ରହିଛି । ତା'ଛଡା ସତନ୍ତ୍ର ଉତ୍କଳ

ପ୍ରଦେଶ ଗଠନ ନିମନ୍ତେ ରିସ୍‌ଲେ ରିପୋର୍ଟରେ ଯେଉଁ ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା ତାହାକୁ କାର୍ଯ୍ୟରେ ପରିଣତ କରିବା ଲାଗି ଏକ ପ୍ରତିନିଧିମୂଳକ ସଂଗଠନ ପ୍ରତିଷ୍ଠା କରିବାକୁ ପଡ଼ିବ ।

ଏଠାରେ ଅନ୍ୟ ଏକ ବିଷୟ ଅବତାରଣା କରାଯାଇପାରେ । ପୂର୍ବରୁ କୁହାଯାଇଛି ଯେ, ଓଡ଼ିଶା ବଙ୍ଗଳା ପ୍ରେସିଡେନ୍ସୀ ଅଧୀନରେ ରହିଥିଲା । ସୁରେନ୍ଦ୍ର ନାଥ ବାନାର୍ଜୀଙ୍କ ପ୍ରତିଷ୍ଠିତ 'ବେଙ୍ଗଲ ନ୍ୟାସନାଲ କନଫରେନ୍ସ' ସେତେବେଳ୍‌କୁ ଏକ ଜାତୀୟ ସ୍ତରରେ ପ୍ରତିନିଧିତ୍ୱ କରି ପାରୁଥିବା ଭଳି ଆଞ୍ଚଳିକ ସଂଗଠନରେ ପରିଣତ ହୋଇ ସାରିଥିଲା । କାରଣ ସୁରେନ୍ଦ୍ର ନାଥ ବାନାର୍ଜୀ ୧୮୯୫ ମସିହାରେ ପୁନା ଠାରେ ଏବଂ ୧୯୦୨ ମସିହାରେ ଅହମ୍ମଦାବାଦଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ରୂପେ ନିର୍ବାଚିତ ହୋଇ କାର୍ଯ୍ୟ କରି ସାରିଥିଲେ । ସେହିହେତୁ ତାଙ୍କ ପ୍ରତିଷ୍ଠିତ 'ବେଙ୍ଗଲ ନ୍ୟାସନାଲ କନଫରେନ୍ସ'ର 'ଭାରତୀୟ ଜାତୀୟ କଂଗେସ' ଉପରେ ବେଶ୍ ପ୍ରଭାବ ରହିଥିଲା । ଏପଟେ ଉତ୍କଳ ପ୍ରଦେଶ ବଙ୍ଗଳା ପ୍ରେସିଡେନ୍ସୀ ଅଧୀନରେ ଥିବା ହେତୁ ଓଡ଼ିଶାର ସମସ୍ୟା ସବୁକୁ ସର୍ବ ଭାରତୀୟ ସ୍ତରରେ ଉପସ୍ଥାପନ କରିବା ନିମନ୍ତେ 'ବେଙ୍ଗଲ ନ୍ୟାସନାଲ କନଫରେନ୍ସ'ରେ ଯୋଗ ଦେବାକୁ ସେ ଅନୁରୋଧ କରିଥିଲେ ଏବଂ ତତ୍କାଳୀନ ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ସହରରେ ତାହାର ଏକ ଅଧିବେଶନ ଆୟୋଜନ କରାଇବା ଲାଗି ନିଷ୍ପତ୍ତି ନେଇଥିଲେ । ମାତ୍ର ସ୍ୱାଭିମାନୀ ମଧୁସୂଦନ ତାହାକୁ ତୀବ୍ର ବିରୋଧ କରିଥିଲେ । କଟକରେ ବଙ୍ଗଳା ପ୍ରାଦେଶିକ କମିଟିର ବୈଠକ ହେବା ଯେ ସମଗ୍ର ଓଡ଼ିଆ ଜାତି ପାଇଁ ଘୋର ଅପମାନ ଏକଥା ସେ ଭଲ ଭାବରେ ହୃଦୟଙ୍ଗମ କରି ପାରିଥିଲେ । ଆଉ ତାହା ହେବାରେ ପ୍ରତିବନ୍ଧକ ସୃଷ୍ଟି କରିଥିଲେ । ବରଂ ସର୍ବଭାରତୀୟ ସ୍ତରରେ ପ୍ରତିନିଧିତ୍ୱ କରି ପାରିବା ଭଳି ଏକ ପ୍ରଭାବଶାଳୀ ଅନୁଷ୍ଠାନ ଓଡ଼ିଶାରେ ଗଠନ କରିବା ନିମନ୍ତେ ସେ ବଦ୍ଧ ପରିକର ହୋଇଥିଲେ । ଅବଶ୍ୟ ଏଥିପାଇଁ ମଧୁସୂଦନଙ୍କୁ ଅକ୍ଳାନ୍ତ ପରିଶ୍ରମ କରିବା ପାଇଁ ପଡ଼ିଥିଲା ।

ସେତେବେଳର ଉତ୍କଳର ଚିତ୍ରପଟକୁ ଅନୁଧ୍ୟାନ କଲେ ଏକଥା ଜାଣି ହେବ ଯେ ଓଡ଼ିଆମାନେ କେବଳ ଭୌଗୋଳିକ କାରଣରୁ ବିଚ୍ଛିନ୍ନ ହୋଇ ରହି ନ ଥିଲେ; ଅଧିକନ୍ତୁ ଗଡ଼ଜାତ-ମୋଗଲବନ୍ଦୀ ମଧ୍ୟରେ ଥିବା ମନୋମାଳିନ୍ୟ ତଥା ଅହଂକାର ଏ କ୍ଷେତ୍ରରେ ଏକ ମୁଖ୍ୟ ପ୍ରତିବନ୍ଧକ ହୋଇ ଠିଆ ହୋଇଥିଲା । ସେଥିପାଇଁ ମଧୁସୂଦନ ୧୯୦୦ ମସିହାରେ ରାଜା ଓ ଜମିଦାରମାନଙ୍କୁ ଏକଜୁଟ କରି ନିଜ କୋଠୀରେ

ଏକ ସମ୍ମିଳନୀ ଡକାଇଥିଲେ । ୧୯୦୧ ମସିହାରେ ଗଞ୍ଜାମର ଜନ ଜାଗରଣ ସୃଷ୍ଟି ନିମନ୍ତେ କାର୍ଯ୍ୟ କରିବା ପାଇଁ ସେ ଖଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କୁ ଅନୁରୋଧ କରି ସଫଳ ମଧ୍ୟ ହୋଇଥିଲେ । ଏ କ୍ଷେତ୍ରରେ ରାଜା ହରିହରଙ୍କୁ ନରସିଂହ ଦାସ ଓ ବାଙ୍କିର ନୀଳମଣି ବିଦ୍ୟାରତ୍ନ ଅକୁଣ୍ଠ ସହଯୋଗ କରିଥିଲେ । ଯୁବରାଜ ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ଦ୍ୱିତୀୟ ଜନ୍ମଦିନ ପାଳନ ଅବସରରେ ୧୯୦୨ ମସିହା ଜାନୁଆରୀ ମାସରେ ରମ୍ଭା ରାଜପ୍ରାସାଦ ଠାରେ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ମଧୁସୂଦନଙ୍କ ବ୍ୟତୀତ ମୟୂରଭଞ୍ଜ ମହାରାଜା ରାମଚନ୍ଦ୍ର ଦେବ, ଫକୀର ମୋହନ ସେନାପତି, ପର୍ଶୁରାମ ପାତ୍ର, ଗଦାଧର ବିଦ୍ୟାଭୂଷଣ, ବଳରାମ ମହାରଣା, ନରସିଂହ ଦାସ, ନୀଳମଣି ବିଦ୍ୟାରତ୍ନ ଏବଂ ଆହୁରି ଅନେକ ଜାତିପ୍ରେମୀ ଯୋଗ ଦେଇଥିଲେ । ଏହି ସମ୍ମିଳନୀରେ ହିଁ 'ଜୟ ଉତ୍କଳ ଜନନୀ' ଧ୍ୱନି ଜନ୍ମ ନେଇଥିଲା । ଏହି ସମ୍ମିଳନୀର ପରବର୍ତ୍ତୀ ଅଧିବେଶନ ଗଞ୍ଜାମ ଠାରେ ଆୟୋଜନ କରିବା ପାଇଁ ମଧୁସୂଦନ ପ୍ରସ୍ତାବ ରଖିଥିଲେ ଏବଂ ସମସ୍ତେ ତାହାକୁ ଅକୁଣ୍ଠ ଚିତ୍ତରେ ସମର୍ଥନ କରିଥିଲେ । ୧୯୦୩ ମସିହା ଏପ୍ରିଲ ୧୧ ତାରିଖରେ ଗଞ୍ଜାମରେ ଏହାର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଶ୍ୟାମ ସୁନ୍ଦର ରାଜଗୁରୁ, ଯିଏକି ଗଞ୍ଜାମ ଜିଲ୍ଲାର ପ୍ରଥମ ଗ୍ରାଜୁଏଟ ହେବାର ଗୌରବ ଅର୍ଜନ କରିଥିଲେ, ସେ ଏହି ସଭାରେ ସଭାପତିତ୍ୱ କରିଥିଲେ ।

ଉକ୍ତ ସମ୍ମିଳନୀ ସମ୍ପର୍କରେ ପ୍ରଖ୍ୟାତ୍ ଜ୍ୟୋତିର୍ବିଦ୍ ପଣ୍ଡିତ ବାଇକୋଳି ମହାପାତ୍ର ତାଙ୍କର 'ଓଡ଼ିଆ ଆନ୍ଦୋଳନର ଇତିହାସ' ପୁସ୍ତକରେ ଲେଖିଛନ୍ତି- " ଏହି ସମ୍ମିଳନୀରେ ମଧୁବାବୁ ଉଦ୍‌ବୋଧନ ଦେଇ କହିଲେ ଯେ ପ୍ରାକୃତିକ ଦେଶର ସବୁ ଅଞ୍ଚଳରୁ ଏଠାକୁ ପ୍ରତିନିଧିମାନେ ଆସିଛନ୍ତି । ତେଣୁ ଏହା 'ଉତ୍କଳ ସମ୍ମିଳନୀ' ବୋଲାଇବ । ସମସ୍ତଙ୍କ ମନକୁ ଏକଥା ପାଇଲା । ସ୍ଥିର ହେଲା 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନ କଟକରେ ଅନୁଷ୍ଠିତ ହେବ । ଏହାର ପ୍ରତିନିଧିମାନେ ଗୋଲାପୀ ରଙ୍ଗର ପାଗ ଧାରଣ କରିବେ । ଗଞ୍ଜାମ ସମ୍ମିଳନୀ ଉତ୍କଳ ସମ୍ମିଳନୀର ଜନ୍ମଦାତ୍ରୀ ହେଲା ।"

ଏହିଭଳି ଭାବରେ ୧୯୦୩ ମସିହାରେ ଗଠିତ ହେଲା ଓଡ଼ିଶାର ସର୍ବପ୍ରଥମ ସର୍ବଭାରତୀୟ ଆଞ୍ଚଳିକ ସଂଗଠନ 'ଉତ୍କଳ ସମ୍ମିଳନୀ' ବା 'ଉତ୍କଳ ୟୁନିଅନ୍ କନଫରେନ୍ସ' । ଏହାର ଅଧ୍ୟକ୍ଷତା କରିଥିଲେ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ।

୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ କଟକର ଇଦ୍‌ଗା ପଡ଼ିଆ ଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା । ଏଥିରେ

ଗଞ୍ଜାମର ୧୨୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏଥିରେ ସାରା ଓଡ଼ିଶାର ରାଜାରାଜୁଡ଼ାଙ୍କଠୁ ଆରମ୍ଭ କରି ସାଧାରଣ ଚାଷୀ ମୂଲିଆ ଶ୍ରେଣୀର ଲୋକ, ହରିଜନ, ଗିରିଜନ ଆଦି ଯୋଗ ଦେଇଥିଲେ । ଓଡ଼ିଶା ବାହାରୁ ୩୩୫ ଜଣ ପ୍ରତିନିଧି ଆସି ଯୋଗ ଦେଇଥିଲେ । ଏହି ଅବସରରେ ଜାତୀୟ ଜାଗରଣ ସୃଷ୍ଟି ଲାଗି ଗୋଟିଏ କୃଷି ଓ ଶିଳ୍ପ ପ୍ରଦର୍ଶନୀ ଖୋଲା ଯାଇଥିଲା । ଏହି ଅଧିବେଶନରେ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳଗୁଡିକର ଏକତ୍ରୀକରଣ କରିବା ନିମନ୍ତେ ବିଚାର ବିମର୍ଶ କରାଯିବା ସହିତ ଓଡ଼ିଶାର ସାମାଜିକ ଓ ଅର୍ଥନୈତିକ ସମସ୍ୟା ନେଇ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରାଯାଇଥିଲା ।

'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନରେ ବାହାରୁ ଯେଉଁ ଲୋକମାନେ ଆସି ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ 'ଅମୃତ ବଜାର ପତ୍ରିକା'ର ସମ୍ପାଦକ ମୋତିଲାଲ ଘୋଷ ଥିଲେ ଅନ୍ୟତମ । ସେ ୧୯୦୪ ମସିହା ଜାନୁଆରୀ ୯ ତାରିଖର 'ଅମୃତ ବଜାର ପତ୍ରିକା'ରେ ଉଲ୍ଲେଖ କରିଥିଲେ- " ବର୍ତ୍ତମାନ କଟକ ଠାରେ ଉତ୍କଳ ସମ୍ମିଳନୀରେ ଏହି ଯେଉଁ ଅଧିବେଶନ ବସିଛି ସେହି ସମ୍ମିଳନୀର ପରିକଳ୍ପନା ଯେଉଁ ବ୍ୟକ୍ତିଙ୍କର ଉର୍ବର ମସ୍ତିଷ୍କରୁ ଜନ୍ମଲାଭ କରିଛି, ସେ ହେଉଛନ୍ତି ମିଷ୍ଟର ଏମ୍.ଏସ୍. ଦାସ, ଯେ କି ମଧୁବାବୁ ନାମରେ ସାରା ଓଡ଼ିଶାର ପୁରପଲ୍ଲୀରେ ପରିଚିତ ।" ସେ ଆହୁରି ଲେଖିଥିଲେ - " ଏହିଠାରେ ହିଁ ଓଡ଼ିଶାର ରାଜା, ମହାରାଜା, ଜମିଦାର ଓ ସାଧାରଣ ଜନତା ସେମାନଙ୍କର ସାଧାରଣ ଅବସ୍ଥାରେ ଉନ୍ନତି ଆଣିବା ଲାଗି ଏକ ସାମୂହିକ ଉଦ୍ୟମରେ ଲାଗିପଡିଥିବାର ପ୍ରଥମ ଥର ପାଇଁ ଦେଖିବାକୁ ମିଳିଥିଲା । ଓଡ଼ିଶାର ରାଜା, ମହାରାଜା, ସମ୍ଭ୍ରାନ୍ତ ପରିବାର ଓ ଶିକ୍ଷିତ ସମାଜର ଲୋକମାନଙ୍କ ସହିତ ସାଧାରଣ ଦରିଦ୍ର ଜନତାର ଏହିଠାରେ ମହାମିଳନ ଘଟିଥିଲା ।"

## ଉତ୍କଳ ସମ୍ମିଳନୀରେ ଜାତୀୟ ଜାଗରଣ

ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା 'ଉତ୍କଳ ସମ୍ମିଳନୀ'ର ମୁଖ୍ୟ ଉଦ୍ଦେଶ୍ୟ ଥିଲେ ମଧ୍ୟ ଏହି ସମ୍ମିଳନୀ ଜରିଆରେ ଅନ୍ୟାନ୍ୟ ବହୁ ସମସ୍ୟାର ସମାଧାନ କରିବା ଲାଗି ଲକ୍ଷ୍ୟ ରଖାଯାଇଥିଲା । ଉତ୍କଳୀୟମାନଙ୍କ ମଧ୍ୟରେ ଜାତୀୟ ଜାଗରଣ ସୃଷ୍ଟି କରିବା ଏବଂ ଓଡ଼ିଶାବାସୀଙ୍କର ସାମାଜିକ, ସାଂସ୍କୃତିକ

ତଥା ଅର୍ଥନୈତିକ ପ୍ରଗତିକୁ ତ୍ୱରାନ୍ୱିତ କରିବା ଏହି ସମ୍ମିଳନୀର ଉଦ୍ଦେଶ୍ୟ ଥିଲା । 'ଦି ଓଡ଼ିଆ' ପତ୍ରିକାରେ ମଧୁସୂଦନ 'ଉତ୍କଳ ସମ୍ମିଳନୀ'ର ଆଭିମୁଖ୍ୟ ସମ୍ପର୍କରେ ଉଲ୍ଲେଖ କରିଥିଲେ, " ଓଡ଼ିଶାର ଅଧିକାଂଶ ଲୋକ ହେଉଛନ୍ତି ଦରିଦ୍ର ଓ ସମ୍ବଳହୀନ । ସେହି ଦରିଦ୍ର ଜନସାଧାରଣଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ନ ଆସିବା ପର୍ଯ୍ୟନ୍ତ ଓଡ଼ିଆମାନଙ୍କର ଜାତୀୟ ଅଗ୍ରଗତି ବିଷୟରେ କିଛି କହିବା ନିତାନ୍ତ ମୂଲ୍ୟହୀନ ଅଟେ ।"

ମଧୁସୂଦନ ଯେତେବେଳେ ବି ବକ୍ତୃତା ଦେଉଥିଲେ ସେତେବେଳେ ସେ ଜାତୀୟ ଜୀବନ ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ଠିକ୍ ସେହିଭଳି ଆଞ୍ଚଳିକତାକୁ ବାଦ୍ ଦେଇ ଜାତୀୟତାର କୌଣସି ଅର୍ଥ ନାହିଁ ବୋଲି ସେ ସ୍ପଷ୍ଟ କରି ଦେଉଥିଲେ । ସେ କହୁଥିଲେ- ଭାରତକୁ ବାଦ୍ ଦେଇ ଯେପରି ଓଡ଼ିଶା ବିଷୟରେ କଳ୍ପନା କରାଯାଇ ପାରିବ ନାହିଁ, ଠିକ୍ ସେହିଭଳି ଓଡ଼ିଶାକୁ ଛାଡି ଭାରତ କଥା ମଧ ଚିନ୍ତା କରଯାଇ ପାରିବ ନାହିଁ ।

ମଧୁସୂଦନ ସଦାସର୍ବଦା 'ଉତ୍କଳ ସମ୍ମିଳନୀ'କୁ ଏକ ଜାତୀୟ ସମ୍ମିଳନୀର ମାନ୍ୟତା ଦେଉଥିଲେ । ୧୯୦୪ ମସିହାରେ ମଦନ ମୋହନ ସିଂହଦେଓଙ୍କ ଅଧକ୍ଷତାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ଦ୍ୱିତୀୟ ଅଧିବେଶନରେ ମଧୁସୂଦନ କହିଥିଲେ- 'ଏହି ସମ୍ମିଳନୀରେ ଉତ୍କଳୀୟ, ବଙ୍ଗୀୟ, ତେଲୁଗୁ, ଗୁଜରାଟୀ, ମାରୱାଡ଼ି ପ୍ରଭୃତି ବିଭିନ୍ନ ଜାତୀୟ ପ୍ରତିନିଧିମାନେ ଉପସ୍ଥିତ ଅଛନ୍ତି । ଏହା ଯେବେ ଭାରତୀୟ ଅନୁଷ୍ଠାନ ମଧରେ ଗଣ୍ୟ ନ ହେବ ତେବେ କଂଗ୍ରେସ କଦାପି ଜାତୀୟ ଅନୁଷ୍ଠାନରେ ଗଣ୍ୟ ହେବନାହିଁ ।'

୧୯୧୩ ମସିହାରେ 'ଉତ୍କଳ ସମ୍ମିଳନୀ'ରେ ପ୍ରଦତ୍ତ ସଭାପତି ଅଭିଭାଷଣରେ ମଧୁସୂଦନ କହିଥିଲେ- 'ସମ୍ମିଳନୀ ଜାତିର ସମ୍ମିଳନ ନିମନ୍ତେ ସମସ୍ତ ଉତ୍କଳବାସୀଙ୍କ ହୃଦୟରେ ଜାତୀୟ ଜୀବନ ସଞ୍ଚାର କରିବା ନିମନ୍ତେ ସ୍ଥାପିତ ହୋଇଅଛି । ଏ ସମ୍ମିଳନୀ କୌଣସି ଏକ ସମ୍ପ୍ରଦାୟସ୍ଥ ବ୍ୟକ୍ତିମାନଙ୍କର ଉନ୍ନତି ସାଧନ ନିମନ୍ତେ ହୋଇନାହିଁ । ଯାହାଦ୍ୱାରା ସମସ୍ତ ଉତ୍କଳବାସୀଙ୍କର ଉନ୍ନତି ହେବ, ସେହି ପ୍ରକାର ସବୁ ଆଲୋଚନା କରିବା ନିମନ୍ତେ ଏ ସମ୍ମିଳନୀର ସୃଷ୍ଟି ।'

ମଧୁସୂଦନ ଏକାଧାରରେ 'ଉତ୍କଳ ସମ୍ମିଳନୀ'ର ଜନ୍ମଦାତା, ମନ୍ତ୍ରଦାତା ଓ ପାଳନକର୍ତ୍ତା ଥିଲେ । ସମ୍ମିଳନୀ ପାଇଁ ସେ ନିଜ ହାତରୁ ପାଣି ଭଳି ଟଙ୍କା ଖର୍ଚ୍ଚ

କରୁଥିଲେ । ଜାତିର ହିତ ସାଧନ ନିମନ୍ତେ ଧନୀ, ଦରିଦ୍ର ଯେ କୌଣସି ଶ୍ରେଣୀର ଲୋକେ ଚାନ୍ଦା ଦେଲେ ସେ ତାହା ଗ୍ରହଣ କରୁଥିଲେ ସତ; ମାତ୍ର ଚାନ୍ଦା ପାଇଁ ଅପେକ୍ଷା ନ ରଖି ସେ ନିଜ ହାତରୁ ଅଜସ୍ର ଟଙ୍କା ଖର୍ଚ୍ଚ କରୁଥିଲେ । ସେ କହୁଥିଲେ, " ଚାନ୍ଦା ପାଇଁ ଅପେକ୍ଷା କରି ଓ ଚାନ୍ଦା ସଂଗ୍ରହ କରି କାମ କରିବା ବେଳକୁ ଘର ବୁଡ଼ି ପାଣି ଆଣ୍ଠୁଏ ହୋଇ ସାରିଥିବ ।"

ଦୁଃଖୀ ଦୁର୍ଗତଙ୍କ ସେବା ନିମନ୍ତେ ମଧୁସୂଦନ ମୁକ୍ତ ହସ୍ତରେ ଦାନ କରୁଥିଲେ । ଏମିତିକି ଦେଶ, ଜାତି ତଥା ଦୀନ ଦୁଃଖୀଙ୍କ ପାଇଁ ଟଙ୍କା ଦେଇ ଦେଇ ଶେଷରେ ସେ ଦେବାଳିଆ ହୋଇ ଯାଇଥିଲେ । ସେଥିଲାଗି ତାଙ୍କ ଭିତରେ ସାମାନ୍ୟ ବି ଅବସୋସ ନ ଥିଲା । ସେ କହୁଥିଲେ, 'ମୁଁ ଟଙ୍କା ଥଳି ଧରି ଜନ୍ମ ହୋଇ ନ ଥିଲି । ଟଙ୍କା କମାଇଥିଲି ମୁଁ । ମୋର ମା', ମୋର ଦେଶ, ମୋର ଭାଇଙ୍କ ପାଇଁ ମୁଁ ଖର୍ଚ୍ଚ କରି ଶୂନ୍ୟ ହାତରେ ଫେରିଯିବି, ସେଥିପାଇଁ ଦୁଃଖ କ'ଣ ? ଦୁଃଖ ମୋର ଏତିକି ଯେ, ମୋ ମନମାଫିକ ମୁଁ ମୋ ଦେଶଟାକୁ, ଜାତିଟାକୁ ଗଢ଼ି ପାରିଲି ନାହିଁ ।"

ଏଭଳି ଏକ ମନର ମଣିଷ ଥିଲେ ମଧୁସୂଦନ । ତାଙ୍କ ମହାନତା ବିଷୟରେ ଶୁଣି ହେବ ସିନା, ଆକଳନ କରାଯାଇ ପାରିବ ନାହିଁ ।

## ଗଞ୍ଜାମ ସଙ୍କଟ

ଦକ୍ଷିଣ ଓଡ଼ିଶାର ପ୍ରମୁଖ ଅଞ୍ଚଳ ଗଞ୍ଜାମ ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନରେ ରହିଥିବା ହେତୁ ସେହି ଅଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରାୟତଃ ସତ୍ତା ହରାଇଥାଏ । ଗଞ୍ଜାମ ଜିଲା କୋର୍ଟ କଚେରିମାନଙ୍କରେ ଓଡ଼ିଆ ଭାଷାକୁ ଉଠେଇ ଦିଆଯାଇଥିଲା । ଫଳରେ ଏହା ବିରୋଧରେ ସମଗ୍ର ଦକ୍ଷିଣ ଓଡ଼ିଶାରେ ତୀବ୍ର ଅସନ୍ତୋଷ ସୃଷ୍ଟି ହୋଇଥିଲା । ତଥ୍ୟ ଅନୁଯାୟୀ ୧୮୭୦ ମସିହା ସେପ୍ଟେମ୍ବର ମାସରେ ଭଞ୍ଜନଗରଠାରେ ଦୀନବନ୍ଧୁ ମହାନ୍ତିଙ୍କ ଆହ୍ୱାନକ୍ରମେ ଖଲିକୋଟ, ଧରାକୋଟ, ସୋରଡ଼ା, ଜଳନ୍ତର, ସୁରଙ୍ଗୀ, ଟିକିଲି ଓ ପାରଳା ଜମିଦାରୀ ଅଞ୍ଚଳର ପ୍ରତିନିଧିମାନେ ଏକତ୍ରିତ ହୋଇଥିଲେ । ଏମାନେ ଜନାର୍ଦ୍ଦନ ଦାସଙ୍କ ସହାୟତାରେ ଗଞ୍ଜାମ ଜିଲାରେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ମାନ୍ଦ୍ରାଜ ସରକାର ଓ ବଡ଼ଲାଟ୍‌ଙ୍କ ନିକଟରେ ନିବେଦନ କରିଥିଲେ । ୧୮୭୩ ମସିହା ଜୁଲାଇ ୨୯ ତାରିଖରେ

ବ୍ରହ୍ମପୁରଠାରେ ଉତ୍କଳ ସମାଜ ଗଠିତ ହେଲା । ଏ ସମସ୍ତ ଉଦ୍ୟମ ସତ୍ତ୍ୱେ ଦକ୍ଷିଣ ଓଡ଼ିଶାରେ ତେଲୁଗୁ ଭାଷାଭାଷୀ ଲୋକମାନଙ୍କର ବେଶ୍ ପ୍ରାଧାନ୍ୟ ରହିଥିଲା । ଅଧିକାଂଶ ସରକାରୀ କାର୍ଯ୍ୟାଳୟ ଗୁଡିକରେ ବହୁ ତେଲୁଗୁ ଭାଷାଭାଷୀ କର୍ମଚାରୀ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ଥିଲେ । ୧୯୦୦ ମସିହା ବେଳକୁ ବ୍ରହ୍ମପୁର କଲେକ୍ଟରଙ୍କ କାର୍ଯ୍ୟାଳୟରେ ମାତ୍ର ୧୨ ଜଣ ଓଡ଼ିଆ ତଳିଆ କର୍ମଚାରୀ ଭାବରେ କାମ କରୁଥିଲେ । ଦକ୍ଷିଣ ଓଡ଼ିଶାରେ ଆନ୍ଧ୍ରର ପ୍ରଭାବ କେତେ ଶକ୍ତିଶାଳୀ ଥିଲା ତାହା ଏଥିରୁ ସହଜରେ ଅନୁମାନ କରାଯାଇ ପାରିବ ।

ଅପରପକ୍ଷରେ, ୧୯୦୩ ମସିହାରେ ବଙ୍ଗଳା ପ୍ରେସିଡେନ୍ସିକୁ ଦୁଇଭାଗ କରିବା ତଥା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ମିଶ୍ରଣ କରିବା ପାଇଁ ଯେଉଁ ରିସ୍‌ଲେ ସର୍କୁଲାର ଘୋଷିତ ହେଲା ତାହା ଦକ୍ଷିଣ ଓଡ଼ିଶାବାସୀଙ୍କ ଦୁର୍ଦ୍ଦଶାକୁ ଆହୁରି ବଢ଼ାଇଦେଲା । ବଙ୍ଗଭଙ୍ଗ ଲାଗି ରିସ୍‌ଲେ ସର୍କୁଲାରରେ ଲର୍ଡ କର୍ଜନ ଯେଉଁ ପ୍ୟାକେଜ୍ ପ୍ଲାନ୍ ପ୍ରସ୍ତୁତ କରିଥିଲେ ତଦ୍ୱାରା ୧୯୦୫ ମସିହାରେ ବଙ୍ଗଳା ଦୁଇଭାଗରେ ବିଭକ୍ତ ହୋଇଗଲା । ଫଳରେ ସମ୍ବଲପୁର ଜିଲ୍ଲା ସମେତ ସୋନପୁର, ବାମଣ୍ଡା, ପାଟଣା, କଳାହାଣ୍ଡି ଓ ଗୁଇରାଖୋଲ ଆଦି ଅଞ୍ଚଳ ବଙ୍ଗଳା ପ୍ରେସିଡେନ୍ସି ଅଧୀନରେ ଥିବା ଓଡ଼ିଶା ଡିଭିଜନ ସହିତ ମିଶିଗଲା । ମାତ୍ର ଗଞ୍ଜାମ ଜିଲ୍ଲାକୁ ଓଡ଼ିଶାରେ ସାମିଲ କରିବା ନେଇ ନୂତନ ସମସ୍ୟା ଓ ସଙ୍କଟମାନ ଦେଖାଦେଲା । ପ୍ରଥମତଃ, ଗଞ୍ଜାମ ଜିଲ୍ଲାରେ ବସବାସ କରୁଥିବା ତେଲୁଗୁ ଭାଷାଭାଷୀ ଲୋକମାନେ ପ୍ରଭାବଶାଳୀ ଥିଲେ । ତେଣୁ ସେମାନେ ଓଡ଼ିଶା ସହିତ ମିଶି ସଂଖ୍ୟାଲଘୁ ହୋଇ ରହିବାକୁ ଚାହିଁଲେ ନାହିଁ । ଦ୍ୱିତୀୟତଃ, ମାନ୍ଦ୍ରାଜ ସରକାରଙ୍କ ଉପରେ ସେମାନଙ୍କର ଖୁବ୍ ପ୍ରଭାବ ରହିଥିଲା । ୟୁନିୟନ ପଞ୍ଚାୟତଠୁ ଆରମ୍ଭ କରି ମ୍ୟୁନିସପାଲିଟି ଆଦି ସମସ୍ତ ଆଞ୍ଚଳିକ କାର୍ଯ୍ୟାଳୟମାନଙ୍କରେ ସେମାନେ ବହୁ ସଂଖ୍ୟାରେ ଉଚ୍ଚ ପଦପଦବୀରେ ଚାକିରି କରିଥିଲେ । ସେହିଭଳି ବଙ୍ଗଭଙ୍ଗ ଫଳରେ ବଙ୍ଗଳା ପ୍ରେସିଡେନ୍ସିର ଯେଉଁ କ୍ଷତି ହୋଇଥିଲା ତାହାକୁ ମାନ୍ଦ୍ରାଜ ପ୍ରେସିଡେନ୍ସି ଭରଣା କରୁ ବୋଲି ଚାପ ପଡୁଥିଲା । କିନ୍ତୁ ସେଥିଲାଗି ମାନ୍ଦ୍ରାଜ ସରକାର ରାଜି ନ ଥିଲେ କି ପ୍ରସ୍ତୁତ ନ ଥିଲେ । ଏପଟେ ଯେତେବେଳେ ତେଲୁଗୁ ଭାଷାଭାଷୀ ଅଧିବାସୀମାନେ ବଙ୍ଗ ପ୍ରେସିଡେନ୍ସୀ ଅଧୀନସ୍ଥ ଓଡ଼ିଶା ପ୍ରଦେଶରେ ନ ମିଶିବା ଲାଗି ବିକ୍ଷୋଭ ଆନ୍ଦୋଳନ ଆରମ୍ଭ କଲେ ସେତେବେଳେ ମାନ୍ଦ୍ରାଜ ସରକାରଙ୍କ ହାତମୁଠା ଆହୁରି ଟାଣ ହୋଇଗଲା ଏବଂ ସେ ଦକ୍ଷିଣ ଓଡ଼ିଶାର ଅଞ୍ଚଳଗୁଡ଼ିକୁ ଓଡ଼ିଶା ପ୍ରଦେଶରେ ମିଶ୍ରଣ ନ କରିବା ଲାଗି ଜିଦ୍ ଧରି ବସିଲେ ।

ସେହି ସମୟରେ ଲର୍ଡ ଆମ୍ପଥିଲ ମାନ୍ଦ୍ରାଜ ପ୍ରେସିଡେନ୍ସୀର ଗଭର୍ଣ୍ଣର ଥିଲେ । ଗଞ୍ଜାମ ଜିଲ୍ଲା କିମ୍ବା ତାହାର ଏଜେନ୍ସି ଏରିଆଗୁଡିକୁ ଓଡ଼ିଶା ଡିଭିଜନ୍‌ରେ ମିଶିବା ପାଇଁ ଦେବେ ନାହିଁ ବୋଲି ସେ ରୋକ୍‌ଠୋକ୍ କହିଦେଲେ । ତାଙ୍କର ଯୁକ୍ତି ଥିଲା- 'ବାଣିଜ୍ୟ ବ୍ୟବସାୟ ମାଧ୍ୟମରେ ସବୁ ସମୟରେ ବିଭିନ୍ନ ଭାଷାଭାଷୀ ଲୋକମାନଙ୍କ ମଧ୍ୟରେ ମିଳାମିଶା ଘଟୁଛି । ଏପରି ସ୍ଥଳେ କେବଳ ଗୋଟିଏ ଭାଷାଭାଷୀ ଲୋକଙ୍କୁ ନେଇ ଗୋଟିଏ ଲେଖାଏଁ ଆଞ୍ଚଳିକ ଡିଭିଜନ ଗଠନ କରିବା ସମ୍ଭବ ନୁହେଁ ।'

ମାତ୍ର ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି, ପରମ୍ପରାକୁ ଗଞ୍ଜାମ ଜିଲ୍ଲାର ବହୁ ଅବଦାନ ରହିଥିଲା । ମଧୁସୂଦନ ତିନିଗୋଟି କଥାକୁ ଜାତୀୟତାର ପ୍ରତୀକ ବୋଲି ଧରି ନେଇଥିଲେ । ସେହି ତିନିଗୋଟି ବିଷୟ ହେଉଛି- ଶ୍ରୀଜଗନ୍ନାଥ, ଉତ୍କଳ ଜନନୀ ଓ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ । ମଧ୍ୟଯୁଗୀୟ ଓଡ଼ିଆ ଭାଷାସାହିତ୍ୟକୁ ନିଜର ଅମର ଲେଖନୀରେ ସମୃଦ୍ଧ କରିଥିବା ଉପେନ୍ଦ୍ର ଭଞ୍ଜ ଗଞ୍ଜାମର ଅଧିବାସୀ ଥିଲେ । ମଧୁସୂଦନ ସବୁବେଳେ କହୁଥିଲେ- ଉପେନ୍ଦ୍ର ଭଞ୍ଜଙ୍କ ଜାତିମନ୍ତ୍ରରେ ଉତ୍କଳ ଜନନୀଙ୍କର ଅବରୁଦ୍ଧ କଣ୍ଠ ଖୋଲିଯିବ । ଏସବୁ ସତ୍ତ୍ୱେ ଗଞ୍ଜାମକୁ ବାଦ୍ ଦେଇ ଏକଭାଷାଭାଷୀ ସତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସମ୍ଭବ ନୁହେଁ ।

ହେଲେ ହାତରେ ଆଉ କିଛି ଉପାୟ ନ ଥିଲା । ଲର୍ଡ କର୍ଜନ ଭାରତର ଭାଇସ୍‌ରାୟ ହୋଇ ରହି ନ ଥିଲେ । ସେ ଛୁଟିନେଇ ବିଲାତ ଫେରି ଯାଇଥିଲେ । ସେଥିପାଇଁ ମାନ୍ଦ୍ରାଜର ଗଭର୍ଣ୍ଣର ଲର୍ଡ ଆମ୍ପଥିଲ ଅସ୍ଥାୟୀ ଭାବରେ ଭାରତର ଭାଇସରାୟ କାର୍ଯ୍ୟ ତୁଲାଉଥିଲେ, ଯିଏକି ଓଡ଼ିଶାରେ ଗଞ୍ଜାମ ମିଶ୍ରଣର ଘୋର ବିରୋଧୀ ଥିଲେ । ତେଣୁ ଓଡ଼ିଶାରେ ଗଞ୍ଜାମ ମିଶ୍ରଣ ନେଇ ଯେଉଁ ଆବେଦନ ପତ୍ର ପଠାଯାଉଥିଲା ତାହା କୌଣସି କାମରେ ଆସୁ ନ ଥିଲା; ବରଂ ଅଳିଆ ଟୋକେଇ ଭିତରକୁ ଫୋପଡ଼ା ଯାଉଥିଲା । ଶେଷରେ ୧୯୦୫ ମସିହା ଜୁଲାଇ ମାସ ୧୯ ତାରିଖରେ ୨୪୯୧ ନମ୍ବର ରିଜୋଲ୍ୟୁସନ ମାଧ୍ୟମରେ ଲର୍ଡ ଆମ୍ପଥିଲ ଜଣାଇ ଦେଲେ ଯେ, ଗଞ୍ଜାମ ଜିଲା ଓ ବିଶାଖାପଟଣାମ୍ ଏଜେନ୍ସି ଓଡ଼ିଶା ଡିଭିଜନ୍‌ରେ ସାମିଲ ହେବନାହିଁ ।

ଲର୍ଡ ଆମ୍ପଥିଲଙ୍କ ଘୋଷଣା ପରେ ଓଡ଼ିଶା ମିଶ୍ରଣ ଆନ୍ଦୋଳନ ତୀବ୍ରରୁ ତୀବ୍ରତର ରୂପ ଧାରଣ କଲା । ବିଭିନ୍ନ ସ୍ଥାନରେ ବିକ୍ଷୋଭ ଓ ପ୍ରତିବାଦ ସଭା ଅନୁଷ୍ଠିତ ହେଲା । ଉତ୍କଳ ସମ୍ମିଳନୀରେ ସରକାରଙ୍କର ଏପରି ମନମୁଖୀ କାର୍ଯ୍ୟକୁ କଟୁ ସମାଲୋଚନା କରାଗଲା । ମାତ୍ର ଫଳ କିଛି ହେଲା ନାହିଁ । ମଧୁସୂଦନ ଚିନ୍ତାକଲେ, ଏଠାରେ

ଅଭିଯୋଗ କରି କିଛି ଲାଭ ନାହିଁ; ବରଂ ଲଣ୍ଡନ ଯାଇ ସେଠାର ଉପରିସ୍ଥ କର୍ମକର୍ତ୍ତାଙ୍କୁ ଭେଟି ଏ ବାବ୍‌ଦରେ ଅବଗତ କରାଇବା ଆବଶ୍ୟକ । ଏହା ଭାବି ୧୯୦୭ ମସିହାରେ ସେ ଦ୍ୱିତୀୟବାର ପାଇଁ ଲଣ୍ଡନ ଗଲେ ।

ଲଣ୍ଡନ୍‌ରେ ମଧୁସୂଦନ ଭାରତର ଶାସନ ଦାୟିତ୍ୱରେ ଥିବା ସେକ୍ରେଟେରୀ ଅଫ୍ ଷ୍ଟେଟ୍ ମିଷ୍ଟର ମର୍ଲେଙ୍କୁ ପ୍ରଥମେ ସାକ୍ଷାତ କଲେ ଏବଂ ଭାରତରେ ଚାଲିଥିବା ବ୍ରିଟିଶରାଜ୍‌ର ତୀବ୍ର ସମାଲୋଚନା କଲେ । ଏଥିସହିତ ବିଭିନ୍ନ ସ୍ଥାନରେ ସଭାସମିତିମାନ ଆୟୋଜନ କରାଇ ବ୍ରିଟିଶ ସରକାର କିଭଳି ଏକଛତ୍ରବାଦ ଚଳାଇଛନ୍ତି ତାହାର ଅବତାରଣା କଲେ । ୧୯୦୭ ମସିହା ସେପ୍ଟେମ୍ବର ମାସ ୨୬ ତାରିଖର 'ଲଣ୍ଡନ୍ ଟ୍ରିବ୍ୟୁନ୍'ରେ ମଧୁସୂଦନଙ୍କୁ ଜଣେ ପ୍ରତିଭାଧର, ନିପୁଣ ରାଜନୀତିଜ୍ଞ ଭାବରେ ବର୍ଣ୍ଣନା କରି ଖବର ପ୍ରକାଶ ପାଇଥିଲା । ସେହିଭଳି ୧୯୦୭ ମସିହା ଅକ୍ଟୋବର ୧୧ ତାରିଖର ଲଣ୍ଡନ୍‌ର 'ଷ୍ଟାଣ୍ଡନ୍ୟୁଜ୍' ପତ୍ରିକାରେ ମିଷ୍ଟର ମର୍ଲେଙ୍କ ସହ ମଧୁସୂଦନଙ୍କର ସାକ୍ଷାତ୍ ସଫଳ ହୋଇଥିବା ଖବରଟି ବଡ଼ ଆକାରରେ ପ୍ରକାଶିତ ହୋଇଥିଲା ।

ଏହି ସମୟରେ ଓଡ଼ିଶାରେ ପୁଣି ଏକ ପ୍ରାକୃତିକ ବିପର୍ଯ୍ୟୟ ଘଟିଲା । ମଧୁସୂଦନ ବ୍ରିଟେନ୍‌ରେ ତାଙ୍କର ଜାତୀୟତା ଆନ୍ଦୋଳନ ଚଳାଇ ରଖିଥିବା ବେଳେ ବ୍ରାହ୍ମଣୀ ନଦୀର ଜନାର୍ଦ୍ଦନ ଘାଇ ଭାଙ୍ଗିଗଲା । ମଧୁସୂଦନ ଖବର ପାଇଲେ ଯେ ଲୋକମାନେ ବନ୍ୟା ଜଳରେ ଭାସି ଯାଇଛନ୍ତି । ଘରଦ୍ୱାର ଧୋଇ ହୋଇଯାଇଛି । ରହିବାକୁ, ଖାଇବାକୁ ନ ପାଇ ଲୋକମାନେ ନାହିଁ ନ ଥିବା ଅସୁବିଧାରେ ପଡିଛନ୍ତି । ପରିସ୍ଥିତି ନ'ଅଙ୍କ ଦୁର୍ଭିକ୍ଷକୁ ବଳି ଯାଇଛି । ଏହାପରେ ତାଙ୍କର ଆଉ ଲଣ୍ଡନରେ ରହିବା ସମ୍ଭବ ହେଲାନାହିଁ । ସେ ତୁରନ୍ତ ଲଣ୍ଡନ ରହଣିକୁ କାଟଛାଣ୍ଟ କରି ନିଜ ଜାତିଭାଇମାନଙ୍କୁ ସଙ୍କଟରୁ ଉଦ୍ଧାର କରିବା ଲାଗି ଭାରତ ଫେରି ଆସିଲେ ।

## ଶିଳ୍ପାୟନର ଅଗ୍ରଦୂତ

ଗୋଟିଏ ଜାତିକୁ ଜୀବନ ଦେବାକୁ ହେଲେ ସେହି ଜାତିର ଅର୍ଥନୈତିକ ଅବସ୍ଥାରେ ପ୍ରଥମେ ସୁଧାର ଆଣିବାକୁ ପଡିବ ବୋଲି ମଧୁସୂଦନ ଭଲ ଭାବରେ ବୁଝି ସାରିଥିଲେ । ସେଥିପାଇଁ ସଦାସର୍ବଦା ସ୍ୱଦେଶୀ ଶିଳ୍ପ ସଂଗଠନ ପ୍ରତିଷ୍ଠା କରିବା

ଦିଗରେ ଗୁରୁତ୍ୱ ଆରୋପ କରିଥିଲେ । ୧୯୦୪ ମସିହାରେ ମଧୁସୂଦନ ଉତ୍କଳ ସମ୍ମିଳନୀରେ ଏ ସମ୍ପର୍କରେ ଭାଷଣ ଦେଇ କହିଥିଲେ- 'ଆମର ପ୍ରତିଜ୍ଞା କରିବା ଉଚିତ ଯେ ବିଦେଶୀ ଦ୍ରବ୍ୟ କିଣିବା ପୂର୍ବରୁ ଚିନ୍ତା କରିବା । ତନ୍ତୀ ବୁଣିବାକୁ ପ୍ରସ୍ତୁତ । ତାକୁ ଏଠାକୁ ପଠାଅ । ସେ ପାଞ୍ଚହାତ ବୁଣୁଥିଲେ ଏଠାରେ ବାର ପନ୍ଦର ହାତ ବୁଣିବା ଶିଖିଯିବ ।'

ମଧୁସୂଦନ ସ୍ୱଦେଶୀ ଶିଳ୍ପର ଉନ୍ନତି ପାଇଁ ଦୁଇଗୋଟି ବଳିଷ୍ଠ ପଦକ୍ଷେପ ନେଇଥିଲେ, ଯାହା ଆଜି ବି ପଥ ପ୍ରଦର୍ଶକ ହୋଇ ରହିଛି । ସେହି ଦୁଇଟି ହେଉଛି - ଓଡ଼ିଶା ସୂକ୍ଷ୍ମକଳା କାରଖାନା ଏବଂ ଉତ୍କଳ ଟ୍ୟାନେରୀ ।

ଉନବିଂଶ ଶତାବ୍ଦୀର ଶେଷଭାଗ ଅର୍ଥାତ ୧୮୯୭ ମସିହାରେ ସେ ନିଜେ ରହୁଥିବା କୋଠିରେ 'ଓଡ଼ିଶା ସୂକ୍ଷ୍ମକଳା କାରଖାନା' ସ୍ଥାପନ କଲେ । ସେତେବେଳେ ସେ କଟକର ମିସନ ରୋଡ଼ ସ୍ଥିତ ଏକ କୋଠାଘରେ ରହୁଥିଲେ । ସେହି ହତାରେ ହିଁ 'ଓଡ଼ିଶା ସୂକ୍ଷ୍ମକଳା କାରଖାନା' ଆରମ୍ଭ ହେଲା । ଏହି କାରଖାନାରେ ଶହେ ରୁ ଦେଢ଼ଶହ ଶିଳ୍ପୀ ପ୍ରତ୍ୟେକ ଦିନ କାମ କରୁଥିଲେ । ଏମାନେ ସମସ୍ତେ କଟକର ଦକ୍ଷ ବଣିଆ ଥିଲେ । ମଧୁସୂଦନ ସେମାନଙ୍କୁ ବୈଜ୍ଞାନିକ ଶିକ୍ଷା ଓ ଯନ୍ତ୍ରପାତି ଯୋଗାଇ ଦେଇଥିଲେ ।

ମଧୁସୂଦନଙ୍କ 'ଓଡ଼ିଶା ସୂକ୍ଷ୍ମକଳା କାରଖାନା'ର ଖ୍ୟାତି ଚାହୁଁଚାହୁଁ ସର୍ବତ୍ର ବ୍ୟାପୀ ଯାଇଥିଲା । ଓଡ଼ିଶା ସୂକ୍ଷ୍ମକଳା କାରଖାନାରେ ପ୍ରସ୍ତୁତ ସୂକ୍ଷ୍ମ ତାରକସି ଗହଣା ସବୁ ତତ୍କାଳୀନ ରାଜା ମହାରାଜାଙ୍କଠୁ ଆରମ୍ଭ କରି ଭାଇସରାୟ, ଲେଫ୍ଟନାଣ୍ଟ ଗଭର୍ଣ୍ଣର, ବଡ଼ବଡ଼ ସରକାରୀ କର୍ମଚାରୀ ତଥା ଭାରତ ଓ ୟୁରୋପର ସାଧାରଣ ଲୋକଙ୍କ ଦ୍ୱାରା ଆଦୃତ ଓ ପ୍ରଶଂସିତ ହୋଇଥିଲା । ମଧୁସୂଦନଙ୍କ 'ସୂକ୍ଷ୍ମକଳା କାରଖାନା' ଯେ କେବଳ ସୁନ୍ଦର ସୁନ୍ଦର ଅଳଙ୍କାର ପ୍ରସ୍ତୁତ କରୁଥିଲା ତା'ନୁହେଁ; ଅଧିକନ୍ତୁ ଆଲୁମିନିୟମ୍, ସୁନା, ରୂପା ଓ କାଠ ପ୍ରଭୃତିରେ ନାନା ପ୍ରକାରର ସୁନ୍ଦର, ସୌଖୀନ ଦ୍ରବ୍ୟ ପ୍ରସ୍ତୁତ କରାଯାଉଥିଲା ଯାହାକି ଓଡ଼ିଶାର ଶିଳ୍ପ ଓ ଚାରୁକଳାର ଖ୍ୟାତିକୁ ସାରା ବିଶ୍ୱରେ ପହଞ୍ଚାଇ ଦେଇଥିଲା । ସେହି ସମୟରେ କଟକ ଗେଜେଟିୟରରେ 'ଓଡ଼ିଶା ସୂକ୍ଷ୍ମକଳା କାରଖାନା' ସମ୍ପର୍କରେ ଯେଉଁ ରିପୋର୍ଟ ପ୍ରକାଶ ପାଇଥିଲା ତାହା ଥିଲା - 'ଓଡ଼ିଶା ସୂକ୍ଷ୍ମକଳା କାର୍ଯ୍ୟାଳୟରେ ଅତି ସୁନ୍ଦର ପଦାର୍ଥ ପ୍ରସ୍ତୁତ ହେଉଅଛି ଏବଂ ମିଷ୍ଟର ଏମ୍.ଏସ୍.ଦାସ ସି.ଆଇ.ଇ ତାହାର ମାଲିକ ଅଟନ୍ତି । ତାହାଙ୍କ ଯତ୍ନରେ ଆଧୁନିକ

ଧରଣର କଳ ଅଣାଯାଇ ଦେଶୀୟ ଶିଳ୍ପୀଙ୍କ ବଂଶାନୁଗତ ଶିକ୍ଷା ଓ କୌଶଳକୁ ସାହାଯ୍ୟ କରାଯାଇଅଛି ।' ବଙ୍ଗର ଜଣେ ଗଭର୍ଣ୍ଣରଙ୍କ ପତ୍ନୀ ଲେଡ଼ି ଇଲିୟଟ୍ ଏହି ସୂକ୍ଷ୍ମକଳା କାରଖାନା ପରିଦର୍ଶନ କରି ମନ୍ତବ୍ୟ ଦେଇଥିଲେ - 'ଯଦିଓ ମୁଁ ଭାରତରେ ଏତେଦିନ ଥିଲି, ତଥାପି ଏପରି ନିପୁଣ କଳା କୁଶଳତାର ନିଦର୍ଶନ ଅନ୍ୟ କେଉଁଠି ଦେଖିନାହିଁ । କୁଶଳତାର ସୂକ୍ଷ୍ମତା ଅତି ସୁନ୍ଦର ।'

ଆଜି କଟକର ଯେଉଁ ତାରକସି କାମ ସାରା ବିଶ୍ୱରେ ପ୍ରସିଦ୍ଧି ଅର୍ଜନ କରିପାରିଛି ତାହା କେବଳ ମଧୁସୂଦନଙ୍କ ତ୍ୟାଗ ଓ ଦୂରଦର୍ଶିତା ପାଇଁ ହିଁ ସମ୍ଭବ ହୋଇଛି । 'ଓଡ଼ିଶା ସୂକ୍ଷ୍ମକଳା କାରଖାନା' ନିଜର ଖ୍ୟାତି ଓ ଲୋକପ୍ରିୟତା ସହିତ ଅନେକ ବର୍ଷ ଧରି ତିଷ୍ଠି ରହିଥିଲା । ମାତ୍ର 'ଉତ୍କଳ ଟ୍ୟାନେରୀ' ସ୍ଥାପିତ ହେବା ପରେ 'ଓଡ଼ିଶା ସୂକ୍ଷ୍ମକଳା କାରଖାନା' ପ୍ରତି ମଧୁସୂଦନ ବିଶେଷ ଧ୍ୟାନ ଦେଇ ପାରିଲେ ନାହିଁ । ଫଳରେ ଏହି ଖ୍ୟାତିସମ୍ପନ୍ନ ତାରକସି କାରଖାନାର ଅଧିକ ପ୍ରସାର ଘଟି ପାରିଲା ନାହିଁ ।

୧୯୦୫ ମସିହାରେ ପ୍ରାୟ ୪୦ ଏକର ପରିମିତ ଜମି ଉପରେ ମଧୁସୂଦନ 'ଉତ୍କଳ ଟ୍ୟାନେରୀ' ନାମରେ ଏକ ଯୋତା କାରଖାନା ପ୍ରତିଷ୍ଠା କଲେ । ମଧୁସୂଦନ ଖୁବ୍ ଭଲ ଭାବରେ ବୁଝିଥିଲେ ଯେ, ଭଦ୍ର ତଥା ସମ୍ଭ୍ରାନ୍ତ ସମାଜରେ ଯୋତା ଏକ ଅତି ଅପରିହାର୍ଯ୍ୟ ସାମଗ୍ରୀ । ଏହା ଯେ କେବଳ ସମ୍ଭ୍ରାନ୍ତ ଲୋକଙ୍କ ମଧ୍ୟରେ ସୀମିତ ତା'ନୁହେଁ, ସାଧାରଣ ବର୍ଗର ଲୋକଙ୍କ ପାଇଁ ମଧ୍ୟ ଯୋତାର ପ୍ରୟୋଜନ ରହିଛି । ମାତ୍ର ଦେଶ ବା ରାଜ୍ୟରେ ଭଲ ଯୋତା କାରଖାନାଟିଏ ନାହିଁ । ମୋଚିମାନେ ଯେଉଁ ଯୋତା ତିଆରି କରୁଛନ୍ତି ତାହା ଆଧୁନିକ ଜ୍ଞାନକୌଶଳ ଅଭାବରୁ ଉଚ୍ଚମାନର ହୋଇ ପାରୁନାହିଁ । ତେଣୁ ଏଠାରେ ଏକ ଯୋତା କାରଖାନା ପ୍ରତିଷ୍ଠା କରିବାର ନିତାନ୍ତ ପ୍ରୟୋଜନ ରହିଛି । 'ଉତ୍କଳ ଟ୍ୟାନେରୀ' ପ୍ରତିଷ୍ଠା କରିବା ପଛରେ ମଧୁସୂଦନଙ୍କର ଆଉ ଦୁଇଗୋଟି ଆଭିମୁଖ୍ୟ ଥିଲା । ପ୍ରଥମତଃ, ସେ ଚାହୁଁଥିଲେ, ସମାଜରେ ଅବହେଳିତ ହୋଇ ପଡିରହିଥିବା ପଛୁଆବର୍ଗର ଲୋକମାନେ ଆର୍ଥିକ ସାଧୀନତା ଫେରି ପାଆନ୍ତୁ ଆଉ ଦ୍ୱିତୀୟରେ, ଓଡ଼ିଶାର ଚମଡ଼ା ଶିଳ୍ପର ଖ୍ୟାତି ସାରା ବିଶ୍ୱରେ ପ୍ରତିଭାତ ହେଉ ।

'ଉତ୍କଳ ଟ୍ୟାନେରୀ' କଟକର ଏକ ସହରତଳି ଅଞ୍ଚଳରେ ସ୍ଥାପନ କରାଯାଇଥିଲା । ଏହା କଟକ ରେଳଷ୍ଟେସନ ଓ ମହାନଦୀ ଠାରୁ ଅଳ୍ପ ଦୂରରେ

ସ୍ଥାପିତ ହୋଇଥିଲା । ଫଳରେ ବାହାରୁ କାରଖାନାକୁ କଞ୍ଚାମାଲ ଆଣିବା ଓ କାରଖାନା ପ୍ରସ୍ତୁତ ସାମଗ୍ରୀ ବାହାରକୁ ପଠାଇବା କାର୍ଯ୍ୟ ସୁରୁଖୁରୁରେ ହେଉଥିଲା । କାରଖାନା ହତାରେ ବବୁରି, ସୁନାରୀ, ଡ଼ିବିଡ଼ିବି ଓ କଣ୍ଟି ପ୍ରଭୃତି ଗଛ ଲଗାଯାଇଥିଲା । ଏହି ଗଛ ସବୁ ଯୋତା ତିଆରି କାର୍ଯ୍ୟରେ ଖୁବ୍ ଦରକାରରେ ଆସୁଥିଲା । କାରଖାନା ପାଇଁ କଞ୍ଚାମାଲ ମୁଖ୍ୟତଃ ରାଜ୍ୟ ଭିତରୁ ସଂଗ୍ରହ କରାଯାଉଥିଲା । ସାଭାବିକ ଭାବରେ ମୃତ ଗୋରୁ, ଗାଈ, ମଇଁଷି, ମେଣ୍ଢା ଆଦିଙ୍କ ଚମଡ଼ାକୁ ମହାନଦୀ ବାଟ ଦେଇ ଡଙ୍ଗାରେ ଟ୍ୟାନେରୀକୁ ଅଣାଯାଉଥିଲା ।

କଲିକତାର ରିସର୍ଚ୍ଚ ଡିପାର୍ଟମେଣ୍ଟର ପରିଚାଳକ ତଥା ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟର ଶିଳ୍ପ ବିଭାଗର ମୁଖ୍ୟ ଶ୍ରୀଯୁକ୍ତ ବି.ଏମ୍.ଦାସ୍ ୧୯୨୧ ମସିହା ଡିସେମ୍ବର ମାସରେ 'ଉତ୍କଳ ଟ୍ୟାନେରୀ' ପରିଦର୍ଶନ କରି ଉଲ୍ଲେଖ କରିଥିଲେ ଯେ, ପ୍ରତି ସପ୍ତାହରେ ୩୦୦ ଗୋରୁ ଚମଡ଼ା ଓ ୨୦୦ ମଇଁଷି ଚମଡ଼ା ଟ୍ୟାନେରୀ କାର୍ଯ୍ୟାଳୟରେ କଷା ଯାଉଛି । ପ୍ରତି ସପ୍ତାହରେ ୬୦୦ ମେଣ୍ଢା ଚମଡ଼ା କଷା ଯାଇ ସପ୍ତାହକୁ ପ୍ରାୟ ୬୦୦ ବୁଟ୍ ତିଆରି ହେଉଛି । ଏତଦ୍‌ବ୍ୟତୀତ, ସୁନ୍ଦର ସୁନ୍ଦର ବ୍ୟାଗ୍, ସୁଟକେଶ, ଟଙ୍କାମୁଣି, ଘୋଡା ଜିନ୍ ମଧ୍ୟ ପ୍ରସ୍ତୁତ କରାଯାଉଛି ।

ମୁଖ୍ୟତଃ ମେଣ୍ଢା ଚମର କ୍ରୋମ ଟ୍ୟାନିଂ ପାଇଁ ସାରା ବିଶ୍ୱରେ ଉତ୍କଳ ଟ୍ୟାନେରୀ ପ୍ରସିଦ୍ଧି ଅର୍ଜନ କରିଥିଲା । ବ୍ରିଟିଶ୍ ସୈନିକମାନଙ୍କ ପାଇଁ ବୁଟ୍ ତିଆରି କରିବାରେ ଟ୍ୟାନେରୀର ଶ୍ରମିକମାନେ ବେଶ୍ ପାରଦର୍ଶିତା ଲାଭ କରିଥିଲେ । ବୃକ୍ଷାଦି ରସରେ ଗୋରୁ ଚମଡ଼ା କଷା ହେଇ ରସେଟ୍‌ରେ ସୈନିକମାନଙ୍କ ନିମନ୍ତେ ଯୋତା ତିଆରି କରାଯାଉଥିଲା । ମଇଁଷି ଚମଡ଼ାରେ ଯୋତାର ତଳ ବା ସୋଲ ପ୍ରସ୍ତୁତ ହେଉଥିଲା । ସେହିଭଳି ଗୋଧି ଓ କୁମ୍ଭୀର ଚମଡ଼ାକୁ କଷା ଯାଇ ନାନାଦି କିସମର ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀମାନ ଉତ୍ପାଦନ କରାଯାଉଥିଲା ।

ଗୋଧି ଚମଡ଼ା ପାଇବା ଅତ୍ୟନ୍ତ କଷ୍ଟକର କାମ ଥିଲା । ମଧୁସୂଦନ ସେଥିପାଇଁ ପାଣ, କଣ୍ଡରା, ସଉରା ଆଦି ଦଳିତ ଉପଜାତିର ଲୋକମାନଙ୍କୁ ନିଯୁକ୍ତ କରିଥିଲେ ଓ ଖଣ୍ଡିଏ ଗୋଧି ଚମଡ଼ାକୁ ସେତେବେଳେ ଦୁଇ ଟଙ୍କା ଦରରେ ସେମାନଙ୍କଠୁ କିଣି ନେଉଥିଲେ । ଏହାଦ୍ୱାରା ସେହିସବୁ ଲୋକମାନେ ବି ଆର୍ଥିକ ଦୃଷ୍ଟିରୁ ବେଶ୍ ଲାଭବାନ ହୋଇ ପାରୁଥିଲେ । ମଧୁସୂଦନଙ୍କ ପ୍ରତିଷ୍ଠିତ 'ଉତ୍କଳ ଟ୍ୟାନେରୀ'ର ପ୍ରଚାର ପ୍ରସାର ୟୁରୋପୀୟ ରାଷ୍ଟ୍ର ସମେତ ସାରା ବିଶ୍ୱରେ ବ୍ୟାପି ଯାଇଥିଲା । ଜର୍ମାନୀ, ଅଷ୍ଟ୍ରିଆ ଓ ଭାରତର ବିଭିନ୍ନ ସ୍ଥାନରୁ ଲୋକମାନେ ଆସି ଟ୍ୟାନେରୀରେ କାମ କରୁଥିଲେ ।

୧୯୦୭ ମସିହା 'ଉତ୍କଳ ଟ୍ୟାନେରୀ' ପାଇଁ ଏକ ସୁବର୍ଣ୍ଣ ବର୍ଷ ଥିଲା । ସେହି ବର୍ଷ କଲିକତା ପ୍ରଦର୍ଶନୀରେ ମଧୁସୂଦନଙ୍କ ଟ୍ୟାନେରୀ ପ୍ରସ୍ତୁତ ଦ୍ରବ୍ୟ ଓ ସାମଗ୍ରୀମାନ ପ୍ରଶଂସିତ ହେବା ସହିତ ସ୍ୱର୍ଣ୍ଣପଦକ ଲାଭ କରିଥିଲା । ୧୯୦୮ ମସିହାରେ କଲିକତା ଗେଜେଟ୍‌ରେ 'ଉତ୍କଳ ଟ୍ୟାନେରୀ'ର ଭୂରିଭୂରି ପ୍ରଶଂସା କରାଯାଇଥିଲା । ଏହି ବର୍ଷ ବଙ୍ଗ ସରକାରଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲର ସଭ୍ୟ ମି. ଜେ.ଜି. କମିଙ୍ଗ (ଆଇ.ସି.ଏସ୍.) ଉଲ୍ଲେଖ କରିଥିଲେ ଯେ, ବଙ୍ଗଳା, ବିହାର ଓ ଓଡ଼ିଶାରେ ସେ ତିନୋଟି ମାତ୍ର କାରଖାନା ଦେଖିବାକୁ ପାଇଥିଲେ, ଯେଉଁଥିରେ କି ୫୦ ବା ତହିଁରୁ ଉର୍ଦ୍ଧ୍ୱ ଲୋକ କାର୍ଯ୍ୟ କରୁଥିବାର ଦେଖିବାକୁ ମିଳନ୍ତି । ଏଠାରେ ସ୍ମରଣ କରାଇ ଦିଆଯାଇ ପାରେ ଯେ, ସାରା ବଙ୍ଗଳା ଡିଭିଜନ୍ ମଧ୍ୟରେ ଚମଡ଼ା ଶିଳ୍ପ କାରଖାନା ହିସାବରେ ଏକମାତ୍ର ଓଡ଼ିଶାର 'ଉତ୍କଳ ଟ୍ୟାନେରୀ' ହିଁ ମି. କମିଙ୍ଗ୍‌ଙ୍କ ଦ୍ୱାରା ସ୍ୱୀକୃତି ପାଇଥିଲା । ୧୯୦୯ ମସିହାରେ ବଙ୍ଗଳାର ତତ୍କାଳୀନ ଶାସନମୁଖ୍ୟ ସାର୍ ଏଡଓ୍ୱାର୍ଡ ବେକର ଉତ୍କଳ ଟ୍ୟାନେରୀ କାର୍ଯ୍ୟାଳୟ ପରିଦର୍ଶନରେ ଆସିଥିଲେ । କ୍ୟାପଟେନ୍ ଆର୍ଲିଂଟନ୍ ନିଜ ରେଜିମେଣ୍ଟର ସୈନ୍ୟମାନଙ୍କ ପାଇଁ ଯୋତା କିଣିନେଇ ଖୁବ୍ ଖୁସି ହୋଇଥିଲେ ଓ ପ୍ରଶଂସା କରିଥିଲେ । ୧୯୧୦ ମସିହା ଜୁନ୍ ୨ ତାରିଖରେ କଲିକତାରୁ ପ୍ରକାଶ ପାଉଥିବା 'କ୍ୟାପିଟାଲ' ପତ୍ରିକାରେ ମଧୁସୂଦନଙ୍କ ଉଦ୍ୟମ ତଥା ଦୂରଦର୍ଶିତାର ଭୂୟସୀ ପ୍ରଶଂସା କରାଯାଇଥିଲା । ୧୯୧୧ରୁ ୧୯୧୮ ମସିହା ପର୍ଯ୍ୟନ୍ତ ସରକାରୀ ଶାସନ ବିଭାଗ ବିବରଣୀରେ 'ଉତ୍କଳ ଟ୍ୟାନେରୀ' ସମ୍ପର୍କରେ ଲେଖାମାନ ନିୟମିତ ପ୍ରକାଶ ପାଉଥିଲା ।

ଅବଶ୍ୟ 'ଉତ୍କଳ ଟ୍ୟାନେରୀ' ଅଭାବ ଅସୁବିଧା ମଧ୍ୟ ଦେଇ ଗତି କରୁ ନ ଥିଲା ବୋଲି କୁହାଯାଇ ପାରିବ ନାହିଁ । ଅନେକ ସମୟରେ ଏହା ଆର୍ଥିକ ସଙ୍କଟ ତଥା ପରିଚାଳନାଗତ ତ୍ରୁଟିର ସମ୍ମୁଖୀନ ହେଉଥିଲା । ୧୯୨୦ ମସିହା ଡିସେମ୍ବର ୧୨ ତାରିଖରେ ବିହାର-ଓଡ଼ିଶା ଶିଳ୍ପ ବିଭାଗର ଡିରେକ୍ଟର 'ଉତ୍କଳ ଟ୍ୟାନେରୀ' ସମ୍ବନ୍ଧରେ ମତବ୍ୟକ୍ତ କରି କହିଥିଲେ- 'ଯେଉଁ ସବୁ ଅସୁବିଧା ଭିତରେ ଉତ୍କଳ ଟ୍ୟାନେରୀ କାମ କରୁଛି, ସେସବୁ ବିଚାର କଲେ ଟ୍ୟାନେରୀ ଯାହା କାମ କରିଛି ତାହା ଅତି ଆଶାଜନକ । ଏହାର ମୂଳଧନର ଅଭାବ, ସବୁ ସମୟରେ ତତ୍ତ୍ୱ ନେବା ପାଇଁ ବିଶେଷଜ୍ଞଙ୍କର ଅଭାବ ଏବଂ ଦାୟିତ୍ୱପୂର୍ଣ୍ଣ ପରିଚାଳକଙ୍କର ଅଭାବ ।'

ସେ ଯାହା ହେଉନା କାହିଁକି, ସ୍ୱଦେଶୀ ଶିଳ୍ପ ସଂଗଠନ ନିମନ୍ତେ ମଧୁସୂଦନ ଯେଉଁ ସ୍ୱପ୍ନ ଦେଖିଥିଲେ ତାହାର ଗୋଟିଏ ଗୋଟିଏ ଫଳଶ୍ରୁତି ହେଉଛି 'ଓଡ଼ିଶା ସୂକ୍ଷ୍ମକଳା କାରଖାନା' ଓ 'ଉତ୍କଳ ଟ୍ୟାନେରୀ' । ଏଥିପାଇଁ ସେ ଯେଉଁଭଳି ଭାବରେ ତ୍ୟାଗ, ଶ୍ରମ ଓ ନିଜ ଉପାର୍ଜିତ ଧନକୁ ପାଣି ଭଳି ବିନିଯୋଗ କରିଛନ୍ତି ସେଥିଲାଗି ସେ ସମସ୍ତଙ୍କ ନିକଟରେ ଚିରଦିନ ସ୍ମରଣୀୟ ହୋଇ ରହିବେ । ସେ ହେଉଛନ୍ତି ଓଡ଼ିଶାର ଏକମାତ୍ର ତଥା ପ୍ରଥମ ଶିଳ୍ପୋଦ୍ୟୋଗୀ ଯିଏ ଶିଳ୍ପକୁ ଜଣେ ବ୍ୟବସାୟୀର ଦୃଷ୍ଟି ନେଇ ଦେଖି ନ ଥିଲେ; ବରଂ ରାଜ୍ୟର ତଥା ରାଜ୍ୟବାସୀଙ୍କର ଖ୍ୟାତି ଓ ଗୌରବର ନିକିତିରେ ତଉଲିଥିଲେ । 'ଓଡ଼ିଶା ସୂକ୍ଷ୍ମକଳା କାରଖାନା' ହେଉ କି 'ଉତ୍କଳ ଟ୍ୟାନେରୀ' ଯୋତା କାରଖାନା, ଏସବୁର ପ୍ରତିଷ୍ଠା ପଛରେ ମଧୁସୂଦନଙ୍କର ସାମାନ୍ୟ ବି ବ୍ୟକ୍ତିଗତ ସ୍ୱାର୍ଥ ନ ଥିଲା । ରାଜ୍ୟର ଅଛୁଆଁ ମୋଚି, ପାଣ, କଣ୍ଡରା, ସଉରା ଆଦି ନିଷ୍ପେଷିତ ଜନଜାତିର ଲୋକମାନଙ୍କର ଆର୍ଥିକ ସ୍ୱଚ୍ଛଳତା କିପରି ସୁଦୃଢ଼ ହେବ ଆଉ ତା' ସହିତ ଓଡ଼ିଶାର ଶିଳ୍ପକଳା ତଥା ତାରକସିର ମର୍ଯ୍ୟାଦା କିଭଳି ବିଶ୍ୱ ଦରବାରରେ ପ୍ରଶଂସିତ ହୋଇ ପାରିବ ସେଥିଲାଗି ମଧୁସୂଦନ ସତତ ଚେଷ୍ଟିତ ଥିଲେ ।

## କୃଷିପ୍ରାଣ ମଧୁସୂଦନ

ଓଡ଼ିଶା ମୁଖ୍ୟତଃ ଏକ କୃଷି ପ୍ରଧାନ ରାଜ୍ୟ । କୃଷିର ଉନ୍ନତି ନ ଘଟିବା ଯାଏ ରାଜ୍ୟର ଉନ୍ନତି ହେବ ନାହିଁ ବୋଲି ମଧୁସୂଦନଙ୍କର ଦୃଢ଼ ଧାରଣା ଥିଲା । ପୁଣି ସେ ଏକଥା ବିଶ୍ୱାସ କରୁଥିଲେ ଯେ କୃଷି ତଥା କୃଷି ଉପଯୋଗୀ ଭୂମି ଉପରେ କୃଷକଙ୍କର ଏକଚାଟିଆ ଅଧିକାର ରହିଛି । ତେଣୁ କୃଷକକୁ କୃଷି ଉପଯୋଗୀ ଭୂମିରୁ ବଞ୍ଚିତ କରାଗଲେ କେବେ ବି ରାଜ୍ୟର ଅର୍ଥନୈତିକ ସମୃଦ୍ଧି ଘଟାଯାଇ ପାରିବ ନାହିଁ । ସେଥିଲାଗି କୃଷକମାନଙ୍କ ନିମନ୍ତେ ମଧୁସୂଦନ ନିଜର ସାଧମତେ ସଂଗ୍ରାମ ଆରମ୍ଭ କରି ଦେଇଥିଲେ ।

୧୯୦୯ ମସିହାରେ ମଧୁସୂଦନ ବଙ୍ଗଳା ଲେଜିସଲେଟିଭ କାଉନ୍‌ସିଲକୁ ତୃତୀୟ ଥର ପାଇଁ ସଭ୍ୟ ରୂପେ ନିର୍ବାଚିତ ହେବା ପରେ ତାଙ୍କର ଏହି ସଂଗ୍ରାମ ଆରମ୍ଭ ହୋଇଥିଲା । ଏହି ସମୟରେ ବଙ୍ଗଳା ଲେଜିସ୍‌ଲେଟିଭ କାଉନ୍‌ସିଲରେ

'ଓଡ଼ିଶା ରୟତି ବିଲ୍' ଆଗତ ହୋଇଥିଲା । ମଧୁସୂଦନ ଦେଖିଲେ ବିଲ୍‌ଟି ସମ୍ପୂର୍ଣ୍ଣ ଭାବରେ ଓଡ଼ିଆ ଚାଷୀଙ୍କ ବିରୋଧୀ । ଏହା ଏକପକ୍ଷରେ ଅତ୍ୟାଚାରୀ ଜମିଦାରମାନଙ୍କୁ ସୁହାଉଥିବା ବେଳେ କୃଷକମାନଙ୍କର ପ୍ରଭୂତ କ୍ଷୟକ୍ଷତି ଘଟାଇବ । ଯଦି ଏହି ବିଲ୍‌ଟି ଭାଇସରାୟ ଲର୍ଡ ହାର୍ଡ଼ିଞ୍ଜଙ୍କର ଅନୁମୋଦନ ଲାଭ କରି ଆଇନ୍‌ରେ ପରିଣତ ହୋଇଯାଏ ତା'ହେଲେ ଓଡ଼ିଶାର ଚାଷୀମାନେ ସେମାନଙ୍କର ଚାଷୋପଯୋଗୀ ଜମି ଉପରୁ ଅଧିକାର ହରେଇ ବସିବେ ଏବଂ ସବୁଦିନ ଲାଗି ଜମିଦାର ମାନଙ୍କର ଆଜ୍ଞାକାରୀ ହୋଇ ରହିବେ ।

ମଧୁସୂଦନ ଏକ ସମ୍ଭ୍ରାନ୍ତ ଜମିଦାର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ପୁଣି ଗଡ଼ଜାତର ରାଜା, ମହାରାଜା ତଥା ମୋଗଲବନ୍ଦୀର ଜମିଦାରଙ୍କ ନିକଟରେ ସେମାନଙ୍କର ଓକିଲ ଓ ଆଇନ ପରାମର୍ଶଦାତା ଭାବରେ କାର୍ଯ୍ୟ କରିଥିଲେ । ଏସବୁ ସତ୍ତ୍ୱେ ତାଙ୍କ ଅନ୍ତର ଭିତରେ କୃଷକମାନଙ୍କ ନିମନ୍ତେ ଦରଦ ଓ ସହାନୁଭୂତି ଭରପୂର ହୋଇ ରହିଥିଲା । ମଧୁସୂଦନଙ୍କ ଚରିତ୍ରର ଏତାଦୃଶ ବିବିଧତା ସମ୍ପର୍କରେ ବିହାର-ଓଡ଼ିଶା ପ୍ରଦେଶର କାର୍ଯ୍ୟକାରୀ ଗଭର୍ଣ୍ଣର ସାର୍ ହଗ୍ ମାକ୍‌ଫରସନ୍ ଉଲ୍ଲେଖ କରିଥିଲେ-ମିଷ୍ଟର ଏମ୍.ଏସ୍.ଦାସ୍‌ଙ୍କ ଅନ୍ତରରେ ଦୁଇଟି ବିଷୟ ପ୍ରତି ବିଶେଷ ଆଗ୍ରହ ଥିଲା । ସେଥିମଧ୍ୟରୁ ଗୋଟିଏ ହେଲା କୃଷିକାରୀ ରୟତ (ଚାଷୀ)ମାନଙ୍କର ଅବସ୍ଥାର ଉନ୍ନତି ସାଧନ ଏବଂ ଅନ୍ୟଟି ହେଲା ସତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ।

ଜମିଦାର ବଂଶରେ ଜନ୍ମ ହୋଇ ବି ମଧୁସୂଦନ ଜମିଦାରୀ ପ୍ରଥାର ଘୋର ବିରୋଧୀ ଥିଲେ । ସେ ନିଜର ଅକାଟ୍ୟ ଯୁକ୍ତି ବଳରେ ଏକଥା ପ୍ରମାଣିତ କରି ଦେଇଥିଲେ ଯେ, ମୂଳରୁ ଭାରତରେ ବା ଓଡ଼ିଶା ରାଜ୍ୟରେ ଜମିଦାରୀ ବୋଲି କିଛି ଗୋଟାଏ ପ୍ରଥା ବା ପରମ୍ପରା ନ ଥିଲା । ବରଂ ଏହା ଲୁଣ୍ଠନକାରୀ ମୋଗଲ ଶାସକମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିଲା ଏବଂ ଘଟଣାକ୍ରମେ ତାହା ବ୍ରିଟିଶ ସରକାରଙ୍କ ଦ୍ୱାରା ସ୍ଥାୟୀ ପ୍ରଥା ଭାବରେ ପ୍ରାଧାନ୍ୟ ବିସ୍ତାର କରିଥିଲା ।

ବାସ୍ତବରେ ଦେଖିବାକୁ ଗଲେ ୧୭୭୩ ମସିହାରେ ଇଂରେଜ ସରକାର 'ଚିରସ୍ଥାୟୀ ବନ୍ଦୋବସ୍ତ' ପ୍ରଥାର ପ୍ରଚଳନ କଲେ । ଫଳରେ ସାରା ଭାରତବର୍ଷରେ ଏକ ମଧ୍ୟ-ସତ୍ତ୍ୱ-ଅଧିକାରୀ ବର୍ଗଙ୍କର ସୃଷ୍ଟିହେଲା । ପରବର୍ତ୍ତୀ ପର୍ଯ୍ୟାୟରେ ଏହି ମଧ୍ୟ-ସତ୍ତ୍ୱ-ଅଧିକାରୀ ବର୍ଗମାନେ ସ୍ଥାୟୀ ସୂତ୍ରରେ ଜମିଜମା ଉପରେ ସେମାନଙ୍କର ଅଧିକାର ସାବ୍ୟସ୍ତ କରି ଚାଲିଲେ । ଏହା ହିଁ ହେଉଛି ଜମିଦାରୀ ପ୍ରଥାର ମୂଳ

କଥା । ଏହାକୁ ଦୃଷ୍ଟିଗୋଚରକୁ ଆଣି ମଧୁସୂଦନ ପ୍ରମାଣ କରିଦେଲେ ଯେ, କୃଷିକ୍ଷମ ଜମିଜମା ଉପରେ କେବଳ କୃଷକର ଅଧିକାର ରହିଛି । ତାକୁ ସେହି ଅଧିକାରରୁ ବଞ୍ଚିତ କରାଯାଇ ପାରିବ ନାହିଁ । ସେହିହେତୁ ଓଡ଼ିଶାରେ 'ଓଡ଼ିଶା ରୟତି ବିଲ୍'ର କୌଣସି ଆବଶ୍ୟକତା ନାହିଁ କି ଏହାର ପ୍ରାସଙ୍ଗିକତା ମଧ ନାହିଁ । ଏଥିରେ ଓଡ଼ିଶାର ଦରିଦ୍ର ଚାଷୀମାନେ ତ କିଛି ଉପକାର ପାଇବେ ନାହିଁ; ବରଂ ସେମାନେ ଏହି ଆଇନ୍ ଦ୍ୱାରା ଦଳିତଲାନ୍ତ ହୋଇଯିବା ସାର ହେବ ।

ମଧୁସୂଦନଙ୍କର ଏଭଳି ଉଦ୍ୟମ ସତ୍ତ୍ୱେ 'ଓଡ଼ିଶା ରୟତି ବିଲ୍' ୧୯୧୧ ମସିହାରେ 'ଓଡ଼ିଶା କୃଷି ଆଇନ୍' ରୂପେ ପରିଣତ ହେଲା । ଏହି ବିଲ୍‌ର ୧୪ ନମ୍ବର ଧାରାରେ ସ୍ପଷ୍ଟ ଉଲ୍ଲେଖ ରହିଥିଲା ଯେ, ଜମି ଖର୍ଦ୍ଦି ବା ବିକ୍ରି ସମୟରେ ଜମିଦାରମାନେ ଦୁଇଟଙ୍କାରୁ ପଚିଶଟଙ୍କା ପର୍ଯ୍ୟନ୍ତ 'ଜମାବନ୍ଦୀ' ଖର୍ଚ୍ଚ ନେଇ ନୂତନ କ୍ରେତାଙ୍କ ନାମରେ ଜମି ରେକର୍ଡ କରି ପାରିବେ । ଏହାଦ୍ୱାରା ଜମିଦାରମାନେ ବିନାଶ୍ରମରେ ଭୂମି ଅଧିକାରୀ ଗରିବ ଚାଷୀଟିଏ ଠାରୁ ଆର୍ଥିକ ଫାଇଦା ହାସଲ କରିପାରିବ ।

ଏହାପରେ ମଧୁସୂଦନଙ୍କର ଆଉ ବୁଝିବା ପାଇଁ ବାକି ରହିଲା ନାହିଁ ଯେ, ଏସବୁ ହେଉଛି ବଙ୍ଗୀୟ ଜମିଦାରଙ୍କର ଗୋଟେ ଗୋଟେ କାରସାଦି । କାରଣ ବହୁ ବଙ୍ଗୀୟ ଜମିଦାରଙ୍କର ଓଡ଼ିଶାରେ ଜମିଦାରୀ ରହିଥିଲା । ସେମାନେ ସେହିହେତୁ ବଙ୍ଗଳା ଅନୁରୂପ ଓଡ଼ିଶାରେ ଏକ 'ରୟତି ବିଲ୍' ଗୃହୀତ କରେଇ ନେବାକୁ ଷଡ଼ଯନ୍ତ୍ର ଆରମ୍ଭ କରି ଦେଇଥିଲେ । ମାତ୍ର ବଙ୍ଗଳାର ରୟତି ଆଇନ୍ ଓଡ଼ିଶାରେ ଆଦୌ ଖାପ ଖାଇବ ନାହିଁ ବୋଲି ମଧୁସୂଦନ ବୁଝି ସାରିଥିଲେ । ତେଣୁ ସେ ଏହି ବିଲ୍‌କୁ ଯତ୍‌ପରୋନାସ୍ତି ବିରୋଧ କରିବାର ଦୃଢ଼ ସଂକଳ୍ପ ନେଲେ ଏବଂ ଏ ବାବଦରେ ପ୍ରାଞ୍ଜଳ ଭାବରେ ବୁଝାଇ କଲିକତାରୁ ପ୍ରକାଶ ପାଉଥିବା 'ଷ୍ଟେଟ୍‌ସମ୍ୟାନ୍' ସମ୍ବାଦପତ୍ରକୁ ଖଣ୍ଡିଏ ପତ୍ର ଲେଖିଲେ । ମଧୁସୂଦନଙ୍କର ଏହି ଚିଠିଟି ୧୯୧୨ ମସିହା ନଭେମ୍ବର ମାସ ୧୩ ତାରିଖର 'ଷ୍ଟେଟସମ୍ୟାନ୍' ପତ୍ରିକାର 'ସମ୍ପାଦକଙ୍କୁ ପତ୍ର' ସ୍ତମ୍ଭରେ ପ୍ରକାଶ ପାଇଲା । ଏହି ଚିଠିରେ ମଧୁସୂଦନ ଉଲ୍ଲେଖ କରିଥିଲେ- ବଙ୍ଗଳାର ରୟତି ଆଇନ୍ ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ । ଯଦି ଏହାକୁ ଓଡ଼ିଶାରେ ଲାଗୁ କରାଯାଏ ତା'ହେଲେ ଓଡ଼ିଶାରେ ବିରାଟ ବିଶୃଙ୍ଖଳା ସୃଷ୍ଟି ହେବ ।

ମଧୁସୂଦନ ଖାଲି ସମ୍ବାଦପତ୍ରରେ ଯେ ଏଭଳି ବିଷୋଦ୍‌ଗାର କଲେ ତା' ନୁହେଁ; କାଉନ୍‌ସିଲ ମଧ୍ୟରେ ବି ଏହାକୁ ବିରୋଧ କରି ତମ୍ପିତୋଫାନ ଖେଳେଇ ଦେଲେ । ଏସବୁ ସତ୍ତ୍ୱେ ବଙ୍ଗଳା ଜମିଦାରଙ୍କ ପ୍ରଭାବରୁ ବିଲ୍‌ଟି ସିଲେକ୍ଟ କମିଟି ନିକଟରୁ ଅପରିବର୍ତ୍ତିତ ଅବସ୍ଥାରେ ଫେରି ଆସିଲା ଯାହା ମଧୁସୂଦନଙ୍କ ସମେତ ଓଡ଼ିଶାର ଚାଷୀକୁଳ ପାଇଁ ଏକ ଶକ୍ତ ଧକ୍‌କା ଥିଲା ।

ଅବଶ୍ୟ ଠିକ୍ ଏତିକିବେଳେ ଆଉ ଏକ ଘଟଣା ଘଟିଲା ଯାହା ଓଡ଼ିଶାର କୃଷକମାନଙ୍କ ପାଇଁ ପରେ ଆଶୀର୍ବାଦ ସାବ୍ୟସ୍ତ ହୋଇଥିଲା । ଭାରତ ସରକାର ତତ୍କାଳୀନ ପରିବେଶ ଓ ପରିସ୍ଥିତିକୁ ନଜରରେ ରଖି ବଙ୍ଗଭଙ୍ଗ ଆଇନ୍‌କୁ ରଦ୍ଦ କରିଦେଲେ ଏବଂ ବଙ୍ଗଳା ଡିଭିଜନ୍‌ରୁ ବିହାର-ଓଡ଼ିଶାକୁ ଅଲଗା କରି ଆଣି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ନିମନ୍ତେ ଘୋଷଣା କଲେ । ମଧୁସୂଦନଙ୍କ ପାଇଁ ଏହା ବିରାଡ଼ି କପାଳକୁ ଶିକା ଛିଣ୍ଡିବା ଭଳି ଘଟଣା ଥିଲା । ସେ ତୁରନ୍ତ ଭାରତ ସରକାରଙ୍କର ଘୋଷଣାକୁ ଏକ ଅସ୍ତ୍ର ରୂପେ ବ୍ୟବହାର କରି ବଙ୍ଗଳା ଲେଜିସ୍‌ଲେଟିଭ୍ କାଉନ୍‌ସିଲରେ ଆଗତ ହୋଇଥିବା 'ଓଡ଼ିଶା ରୟତି ବିଲ'କୁ କିଭଳି ଅନୁମୋଦନ କରାଇ ଦିଆଯିବ ନାହିଁ ସେଥିଲାଗି ଉଦ୍ୟମ ଆରମ୍ଭ କରିଦେଲେ । କାଉନ୍‌ସିଲରେ ସେ ଯୁକ୍ତି ବାଢ଼ିଲେ ଯେ ନିକଟ ଭବିଷ୍ୟତରେ ବିହାର-ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବାକୁ ଯାଉଛି । ସେହିହେତୁ 'ଓଡ଼ିଶା ରୟତି ବିଲ୍'କୁ ତରବରିଆ ଭାବରେ ବଙ୍ଗଳା ଲେଜିସଲେଟିଭ କାଉନ୍‌ସିଲରେ ଗୃହୀତ କରାଇ ନେବାର କୌଣସି ଆବଶ୍ୟକତା ନାହିଁ । ତା'ଛଡ଼ା ଆଇନ୍‌କୁ କାର୍ଯ୍ୟକାରୀ କରିବ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲ । ତେଣୁ ବିଲ୍‌ଟିକୁ ସେମାନଙ୍କ ହାତକୁ ଦେଇଦିଆଯିବା ସବୁ ଦିଗରୁ ଉଚିତ ହେବ ।

ତଥାପି ମଧୁସୂଦନଙ୍କର ଉଦ୍ୟମ ସଫଳ ହେଲା ନାହିଁ । ଅବଶ୍ୟ ବିଫଳ ହୋଇଥିଲା ବୋଲି ମଧ୍ୟ କୁହାଯାଇ ପାରିବ ନାହିଁ । ପ୍ରଭାବଶାଳୀ ବଙ୍ଗୀୟ ଜମିଦାରଙ୍କ ଚାପରେ ୧୯୧୨ ମସିହା ମାର୍ଚ୍ଚ ୨୭ ତାରିଖ ଦିନ ଏହା ଏକ ଆଇନ୍‌ରେ ପରିଣତ ହୋଇଗଲା । ହେଲେ ତାହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଭାଇସରାୟ ଲର୍ଡ ହାର୍ଡ଼ିଞ୍ଜ ସ୍ୱୀକୃତି ଦେଲେ ନାହିଁ । କାରଣ ସେହିବର୍ଷ ଅର୍ଥାତ୍ ୧୯୧୨ ମସିହା ଏପ୍ରିଲ ୧ ତାରିଖରେ ନୂତନ ବିହାର-ଓଡ଼ିଶା ପ୍ରଦେଶ ଘୋଷଣା କରାଯିବାର କାର୍ଯ୍ୟକ୍ରମ ରହିଥିଲା । ତା'ଛଡା ହାର୍ଡିଞ୍ଜଙ୍କର ହୃଦବୋଧ ହୋଇଥିଲା ଯେ, ବଙ୍ଗଳା

ଲେଜିସ୍‌ଲେଟିଭ କାଉନ୍‌ସିଲରେ ଗୃହୀତ ହୋଇଥିବା 'ଓଡ଼ିଶା ରୟତି ବିଲ' ସମ୍ପୂର୍ଣ୍ଣ ଭାବରେ ଓଡ଼ିଆ ଚାଷୀକୁଳ ବିରୋଧୀ । ସେଥିପାଇଁ ସେ ଆଇନ୍ କାର୍ଯ୍ୟକାରୀ କରିବା ପାଇଁ ତାଙ୍କର ଅନୁମୋଦନ ଦେଲେନାହିଁ । ଗୋଟିଏ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ଗୃହୀତ ଆଇନ୍‌କୁ ଭାଇସ୍‌ରାୟ ସ୍ୱୀକୃତି ନ ଦେବା ସାରା ଭାରତବର୍ଷରେ ପ୍ରଥମ ଘଟଣା ଥିଲା । ଏ ବାବଦରେ ଲର୍ଡ଼ ହାର୍ଡ଼ିଞ୍ଜ ଲେଖିଛନ୍ତି- 'ମୁଁ ବହୁବର୍ଷ ଧରି ଭାଇସରାୟ ରହିଛି । ହେଲେ କୌଣସି ଭାଇସରାୟ କେବେହେଲେ ଏହିପରି କୌଣସି ବିଲକୁ ସ୍ୱୀକୃତି ଦେବାକୁ ଅସ୍ୱୀକାର କରିଦେଇଥିବା ଘଟଣା କେବେ ଶୁଣାଯାଇ ନ ଥିଲା ।'

ସତକୁସତ ଭାଇସରାୟଙ୍କ ଅନୁମୋଦନ ନ ପାଇ ଅଟକି ରହିଥିବା 'ଓଡ଼ିଶା ରୟତି ବିଲ'ଟିକୁ ଶେଷରେ ବିହାର-ଓଡ଼ିଶା ଲେଜିସଲେଟିଭ କାଉନସିଲକୁ ପଠାଇ ଦିଆଗଲା । ଏହିପରି ଭାବରେ ଓଡ଼ିଶାର ଚାଷୀକୁଳଙ୍କ ନିମନ୍ତେ ମଧୁସୂଦନଙ୍କ ଅହୋରାତ୍ର ଉଦ୍ୟମ ସଫଳ ହେଲା ।

କୃଷି ତଥା କୃଷକର ଉନ୍ନତି ନିମନ୍ତେ ମଧୁସୂଦନଙ୍କର କାର୍ଯ୍ୟ ସେତିକିରେ ସୀମିତ ରହି ନ ଥିଲା; ସେ ଓଡ଼ିଶାରେ କୃଷିକୁ ଏକ ଅର୍ଥକରୀ ବ୍ୟବସାୟରେ ପରିଣତ କରିବା ପାଇଁ ସମବାୟ ଆନ୍ଦୋଳନର ଅୟମାରମ୍ଭ କରିଥିଲେ । ଏହି ଉଦ୍ଦେଶ୍ୟ ରଖି ୧୮୯୮ ମସିହାରେ କଟକରେ କୋ-ଅପରେଟିଭ ଷ୍ଟୋର ପ୍ରତିଷ୍ଠା କରିଥିଲେ । କଟକ କୋ-ଅପରେଟିଭ ଷ୍ଟୋର ପ୍ରଥମ ବର୍ଷ କୃଷିଜାତ ସାମଗ୍ରୀର କାରବାର କରି ବେଶ୍ ଲାଭବାନ ହୋଇ ପାରିଥିଲା ।

କୃଷିର ଉନ୍ନତି ସମ୍ପର୍କରେ ତଥା ଓଡ଼ିଶାର କୃଷିଜାତ ସାମଗ୍ରୀର ଏକ ଅନ୍ତଃରାଷ୍ଟ୍ରୀୟ ବଜାର ସୃଷ୍ଟି ଉପରେ ମଧୁସୂଦନ ଉତ୍କଳ ସମ୍ମିଳନୀରେ ଯେଉଁ ଭାଷଣ ଦେଇଥିଲେ ତାହା ପ୍ରଣିଧାନଯୋଗ୍ୟ-

'କୃଷିର ଉନ୍ନତି ବିଷୟରେ ଆମ୍ଭମାନଙ୍କୁ ଅନେକ ବିଷୟରେ ଚିନ୍ତା କରିବାକୁ ପଡିବ । ବର୍ତ୍ତମାନ କୃଷିଜାତ ଦ୍ରବ୍ୟର ଉତ୍ପାଦନ ବିଷୟରେ ଆମ୍ଭମାନଙ୍କର ଏପରି ଚେଷ୍ଟା କରିବା ଆବଶ୍ୟକ ଯାହାଦ୍ୱାରା ଆମ୍ଭମାନଙ୍କର ଦେଶର ଆଭ୍ୟନ୍ତରୀଣ ଅଭାବ ପୂର୍ଣ୍ଣ ହେବ ଏବଂ ଦେଶଜାତ ଦ୍ରବ୍ୟ ବିଦେଶକୁ ପ୍ରେରିତ ହେବ । ସର୍ବପ୍ରଥମେ ଉତ୍କଳର ବିଭିନ୍ନ ସ୍ଥାନର ମୃତ୍ତିକାର ବିଭିନ୍ନ ଶସ୍ୟ ଉତ୍ପାଦିକା ଶକ୍ତି ଜାଣି କେଉଁ ସ୍ଥାନର ମୃତ୍ତିକା କେଉଁ ଫସଲ ନିମନ୍ତେ ଅନୁକୂଳ, ତାହା ରାସାୟନିକ ପରୀକ୍ଷା ଓ ବାସ୍ତବ ପରୀକ୍ଷା ଦ୍ୱାରା ସ୍ଥିର କରିବାକୁ ହେବ । କେଉଁ ପ୍ରକାର ଖତ ପ୍ରୟୋଗ କଲେ ମୃତ୍ତିକାର

ଉର୍ବରତା ବଢ଼ିବ, କି ପ୍ରଣାଳୀରେ କୃଷି କଲେ ପ୍ରଚୁର ଶସ୍ୟ ଉତ୍ପନ୍ନ ହେବ, ଏଗୁଡ଼ିକ ସ୍ଥିର କରି କାର୍ଯ୍ୟରେ ପରିଣତ କରିବାକୁ ହେବ ।'

କୃଷି ଏବଂ ଶିଳ୍ପର ସମାନ୍ତରାଳ ଅଗ୍ରଗତି କରାଯାଇପାରିଲେ ଦେଶ ବା ରାଜ୍ୟବାସୀଙ୍କର ଉନ୍ନତି ନିଶ୍ଚିତ ବୋଲି ମଧୁସୂଦନଙ୍କର ଦୃଢ଼ ଧାରଣା ଥିଲା । ସେଇଥିପାଇଁ ସେ ଏକସଙ୍ଗରେ ଶିଳ୍ପ ଏବଂ କୃଷିର ଉନ୍ନତି ଉପରେ ଗୁରୁତ୍ୱ ଦେଇଥିଲେ । ତାଙ୍କର ସେଦିନର ଦୂରଦର୍ଶିତାକୁ ଆଜିର ପ୍ରତିଟି ମଣିଷ ଯଦି ଧ୍ୟେୟ କରି ପାରନ୍ତା ତା'ହେଲେ ବର୍ତ୍ତମାନ ରାଜ୍ୟରେ ଯେଉଁ ସଙ୍କଟଜନକ ପରିସ୍ଥିତି ସୃଷ୍ଟି ହେଉଛି ତାହା ଦେଖିବାକୁ ମିଳନ୍ତା ନାହିଁ ।

## ଲର୍ଡ ହାର୍ଡିଞ୍ଜଙ୍କ ଓଡ଼ିଶା ବିଦ୍ୱେଷ ନୀତି

ଭାଇସ୍‌ରାୟ ଲର୍ଡ ହାର୍ଡିଞ୍ଜ ବଙ୍ଗଳା ପ୍ରେସିଡେନ୍‌ସୀରୁ ବିହାର-ଓଡ଼ିଶାକୁ ଅଲଗା କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ନିମନ୍ତେ ଯେଉଁ ପଦକ୍ଷେପ ନେଲେ ତାହା ଅବଶ୍ୟ ଗୋଟିଏ ଦିଗରୁ ଓଡ଼ିଶାବାସୀଙ୍କ ପାଇଁ ସୁଖର ଖବର ଥିଲା । କିନ୍ତୁ ଏହା ପଛରେ କୌଣସି ଯଥାର୍ଥତା ବା ବଳିଷ୍ଠ ଯୁକ୍ତି ଥିବା ବିଷୟ ମଧୁସୂଦନ ଚିନ୍ତା କରି ପାରିଲେ ନାହିଁ । ସୁଖର ବିଷୟଟି ହେଉଛି ସ୍ୱତନ୍ତ୍ର ବିହାର-ଓଡ଼ିଶା ପ୍ରଦେଶ ଗଠନ ଘୋଷଣା ପରେ ବଙ୍ଗୀୟ ଜମିଦାରଙ୍କ ଦ୍ୱାରା ଓଡ଼ିଶା କୃଷକମାନଙ୍କ ବିରୋଧରେ ହୋଇଥିବା ଷଡଯନ୍ତ୍ରକୁ ଭଣ୍ଡୁର କରାଯାଇ ପାରିଲା । ହେଲେ ବିହାର ସହିତ ମିଶି ରହିଲେ ଭାଷାଗତ, ଭୌଗୋଳିକ ତଥା ଆଚାର, ବିଚାର ଓ ଭାବଗତ ବୈଷମ୍ୟ ଯେ ଓଡ଼ିଆମାନଙ୍କ ପାଇଁ ଅସୁବିଧା ସୃଷ୍ଟି କରିବ ସେକଥା ମଧୁସୂଦନଙ୍କୁ ଜଳଜଳ ହୋଇ ଦେଖାଗଲା ।

ତେବେ ଏଠାରେ ପ୍ରଥମେ ବିଚାର କରିବାକୁ ପଡିବ ଯେ, ଅତର୍କିତ ଭାବରେ ଲର୍ଡ ହାର୍ଡିଞ୍ଜ କ'ଣ ପାଇଁ ବଙ୍ଗ ପ୍ରେସିଡେନ୍‌ସୀରୁ ବିହାର-ଓଡ଼ିଶାକୁ ବାଦ୍‌ଦେଇ ତାହାକୁ ଛୋଟନାଗପୁର ସହିତ ମିଶାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାର ପ୍ରସ୍ତାବ ଦେଲେ । ଏହା ପଛରେ କେଉଁ କାରଣ ଲୁଚି ରହିଥିଲା । ମୂଳକଥା ହେଉଛି ଲର୍ଡ ହାର୍ଡିଞ୍ଜଙ୍କର ଲର୍ଡ କର୍ଜନଙ୍କ ପ୍ରତି ଶତ୍ରୁତା । ଉଭୟ ଲର୍ଡ ହାର୍ଡିଞ୍ଜ ଏବଂ ଲର୍ଡ କର୍ଜନଙ୍କ ମଧ୍ୟରେ ଶ୍ରଦ୍ଧାଭାବ ଯେତିକି ଥିଲା, ପରସ୍ପର ପ୍ରତି ବିଦ୍ୱେଷ ଭାବ ତା'ଠାରୁ ବେଶି

ଥିଲା । ହାର୍ଡିଞ୍ଜଙ୍କ ଲିଖିତ ‘ଓଲ୍ଡ ଡିପ୍ଲୋମାସୀ’ ପୁସ୍ତକ ପଢ଼ିଲେ ଏକଥା ସ୍ପଷ୍ଟ ଭାବରେ ଜଣାଯାଏ । ସେହି କାରଣରୁ ଲର୍ଡ କର୍ଜନ ଭାଇସ୍‌ରାୟ ଥିବା ବେଳେ ଯେଉଁ ସବୁ କାର୍ଯ୍ୟ କରିଯାଇଥିଲେ ହାର୍ଡିଞ୍ଜ ଭାଇସ୍‌ରାୟ ହେବା ପରେ ତାଙ୍କର ପ୍ରଥମ କାମ ହେଲା ସେସବୁକୁ ରଦ୍ଦ କରିଦେବା, ନହେଲେ ସେଥିରେ ଓଲଟପାଲଟ କରିବା । ଖାସ୍ ଏଇଥିପାଇଁ କର୍ଜନ୍ କଲିକତାକୁ ଭାରତର ରାଜଧାନୀ କରିଥିବା ବେଳେ ହାର୍ଡିଞ୍ଜ ରାଜଧାନୀକୁ କଲିକତାରୁ ଉଠାଇ ଦିଲ୍ଲୀକୁ ନେଇଗଲେ । କର୍ଜନ ଓଡ଼ିଶାବାସୀଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ ଏବଂ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ମିଶାଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ପ୍ରତିଶ୍ରୁତି ଦେଇଥିଲେ । ହାର୍ଡିଞ୍ଜ କର୍ଜନ ବିଦ୍ୱେଷୀ ଥିବା ହେତୁ ସେ ଓଡ଼ିଆମାନଙ୍କର ସୁଖ ସୁବିଧାକୁ ଚୂରମାର କରିବା ପାଇଁ ଉଦ୍ୟମ ଆରମ୍ଭ କରିଦେଲେ । ସେହି ଉଦ୍ୟମର ଫଳଶ୍ରୁତି ହେଉଛି ‘ବିହାର-ଓଡ଼ିଶା’ ସ୍ୱତନ୍ତ୍ର ପ୍ରଦେଶ ଗଠନ ।

୧୯୧୧ ମସିହା ଅଗଷ୍ଟ ମାସ ୨୫ ତାରିଖରେ ଲର୍ଡ ହାର୍ଡିଞ୍ଜ ବିଲାତରେ ଥିବା ଭାରତର ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ସଙ୍କ ନିକଟକୁ ଏକ ପତ୍ର ଲେଖି ଜଣାଇ ଦେଇଥିଲେ ଯେ, ସେ ବଙ୍ଗଭଙ୍ଗ ଆଇନ୍‌କୁ ରଦ୍ଦ କରିଦେବାକୁ ଚାହାନ୍ତି ଏବଂ ଛୋଟନାଗପୁର ଅଞ୍ଚଳକୁ ମିଶାଇ ଏକ ନୂତନ ବିହାର-ଓଡ଼ିଶା ପ୍ରଦେଶ ଗଠନ କରିବା ସହିତ ଆସାମକୁ ଚିଫ୍ କମିଶନର ଶାସିତ ରାଜ୍ୟ କରିବାର ଯୋଜନା କରୁଛନ୍ତି । ଏହି ବାର୍ତ୍ତାରେ ସେ ଲର୍ଡ କର୍ଜନଙ୍କ ଭାଷାଭିତ୍ତିକ ପ୍ରଦେଶ ଗଠନ କରିବାକୁ ଘୋର ବିରୋଧ ଓ ସମାଲୋଚନା କରିଥିଲେ । ସେ ମତ ଦେଇଥିଲେ ଯେ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ଯିବା ବେଳେ କେବଳ ଭାଷାକୁ ନୁହେଁ, ଶାସନଗତ ସୁବିଧା, ସ୍ଥାନୀୟ ଅଧିବାସୀଙ୍କ ଇଚ୍ଛା ଏବଂ ରାଜନୈତିକ ତଥା ଶାସନଗତ କାରଣକୁ ମଧ୍ୟ ବିଚାରକୁ ନିଆଯିବା ଜରୁରୀ । ମାତ୍ର ଏଠାରେ ଦେଖିବାର କଥା ଯେ, ଖୋଦ୍ ହାର୍ଡିଞ୍ଜ ମଧ୍ୟ କର୍ଜନ୍‌ଙ୍କ ପ୍ରତି ଥିବା ବିଦ୍ୱେଷ ଭାବକୁ ପୂରଣ କରିବାକୁ ଯାଇ ଅନେକ କ୍ଷେତ୍ରରେ ନିଜର ନୀତିକୁ ନିଜେ ହିଁ ଉଲ୍ଲଙ୍ଘନ କରି ଯାଇଥିଲେ । ଯଦି ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ଭାଷା ଏକମାତ୍ର ମୁଖ୍ୟ ଉପାଦାନ ନୁହେଁ, ତା’ହେଲେ ବଙ୍ଗଭଙ୍ଗ ଆଇନ୍‌କୁ ବାତିଲ କରିବାର କୌଣସି କାରଣ ନ ଥିଲା । କାରଣ ପୂର୍ବବଙ୍ଗ ଓ ପଶ୍ଚିମବଙ୍ଗରେ ଏକ ଭାଷାଭାଷୀ ଲୋକେ ବସବାସ କରୁଥିଲେ । ସେହିହେତୁ ସେମାନଙ୍କୁ ଅଲଗା କରାଯାଇ ପାରିବ ନାହିଁ ବୋଲି ହାର୍ଡିଞ୍ଜ ଯୁକ୍ତି ଦର୍ଶାଇଥିଲେ । ଯଦି ହାର୍ଡିଞ୍ଜଙ୍କ ସେହି

ଯୁକ୍ତିକୁ ମାପକାଠି ଭାବରେ ଗ୍ରହଣ କରାଯାଏ ତେବେ ବିହାର ସହିତ ଓଡ଼ିଶା ମିଶି ରହିବାର କୌଣସି ପ୍ରାସଙ୍ଗିକତା ନ ଥିଲା । କିନ୍ତୁ ହାର୍ଡିଞ୍ଜ ନିଜେ ତାଙ୍କ ବାର୍ତ୍ତାରେ ଉଲ୍ଲେଖ କରିଥିଲେ- 'ତଥାପି ମୁଁ ଚାହେଁ ଓଡ଼ିଆମାନେ ସତନ୍ତ୍ର ନ ହୋଇ ବିହାର ଓ ଛୋଟନାଗପୁର ଅଞ୍ଚଳ ସହିତ ମିଶି ରହିବା ଦରକାର ।' ନିଜର ଯୁକ୍ତିକୁ ଯଥାର୍ଥ ରୂପ ଦେବା ପାଇଁ ସେ ଏକଥା ଲେଖିଥିଲେ ଯେ ବିହାର ସହିତ ଓଡ଼ିଶା ମିଶି ରହିଲେ ବିହାରର ଲୋକମାନେ ବନ୍ଦର ସୁବିଧା ଉପଭୋଗ କରି ପାରିବେ । ମାତ୍ର କୌତୂହଳର ବିଷୟ- ସମ୍ଭବତଃ ହାର୍ଡିଞ୍ଜ ଭୁଲି ଯାଇଥିଲେ ସେତେବେଳକୁ ଓଡ଼ିଶାର ୩୦୦ ମାଇଲ ବ୍ୟାପୀ ଉପକୂଳରେ ଗୋଟିଏ ବି ବନ୍ଦର ନ ଥିଲା । ପୂର୍ବରୁ ଯେଉଁସବୁ ବନ୍ଦର ଥିଲା ତାହା ପୋତି ହୋଇ ପଡିଥିଲା ଏବଂ ତାହାର ପୁନରୁଦ୍ଧାର କରିବାକୁ ଇଂରେଜ ସରକାର କୌଣସି ପଦକ୍ଷେପ ନେଉ ନ ଥିଲେ । ବାସ୍ତବରେ ଏହା ହାର୍ଡିଞ୍ଜ ମହାଶୟଙ୍କର 'ଓଡ଼ିଶା ବିଦ୍ୱେଷୀ ସଂସ୍କାର' ଥିଲା । ଅବଶ୍ୟ ଏଥିରେ କେବଳ ହାର୍ଡିଞ୍ଜଙ୍କର ଦୋଷ ନ ଥିଲା । ଏହା ପଛରେ ଭାଇସ୍‌ରାୟ ଏକ୍‌ଜିକ୍ୟୁଟିଭ କାଉନ୍‌ସିଲର ସଦସ୍ୟ ଥିବା ଅଲ୍ଲି ଇମାମ୍ ନାମକ ଜଣେ ବିହାରୀ ମୁସଲମାନଙ୍କର ପ୍ରଚ୍ଛନ୍ନ ହାତ ମଧ ରହିଥିଲା ।

ତେବେ ଏହି ଘଟଣାର ଛଅ ବର୍ଷ ପରେ ଅର୍ଥାତ୍ ୧୯୧୭ ମସିହାରେ ମଣ୍ଟେଗୁ-ଚେମସଫୋର୍ଡ ରିପୋର୍ଟ ପ୍ରକାଶ ପାଇଲା । ଏହି ରିପୋର୍ଟରେ କୁହାଯାଇଥିଲା ଯେ ଓଡ଼ିଶା, ବିହାର କିମ୍ବା ଛୋଟନାଗପୁର ଅଞ୍ଚଳର କାହାରି ସହିତ କାହାରି ସମ୍ପର୍କ ନାହିଁ । ତେଣୁ ଓଡ଼ିଶାକୁ ବିହାର ଏବଂ ଛୋଟନାଗପୁର ସହିତ ମିଶାଇ ଦେବାର ପ୍ରସ୍ତାବ ସମ୍ପୂର୍ଣ୍ଣ ଭାବରେ ଅଯୌକ୍ତିକ ଓ ଅପ୍ରାକୃତିକ ।

ଭାଇସ୍‌ରାୟ ଲର୍ଡ ହାର୍ଡିଞ୍ଜଙ୍କର ଓଡ଼ିଶା ପ୍ରତି ଏଭଳି ବୈମାତୃକ ମନୋଭାବ ମଧୁସୂଦନଙ୍କୁ ବିବ୍ରତ କରିଦେଇଥିଲା । ସେଥିପାଇଁ ଦିଲ୍ଲୀରେ ଅନୁଷ୍ଠିତ ଅଭିଷେକ ଦରବାରକୁ ଯିବା ପାଇଁ ତାଙ୍କୁ ସମ୍ମାନପୂର୍ବକ ଆମନ୍ତ୍ରଣ କରାଯାଇଥିଲେ ମଧ ସେ ତାହାକୁ ବର୍ଜନ କରିଥିଲେ । ଅପରପକ୍ଷରେ, ଭାରତରେ ସିନା ଲର୍ଡ କର୍ଜନ ଆଉ ଭାଇସ୍‌ରାୟ ହୋଇ ରହି ନ ଥିଲେ, ତେବେ ଭାରତର ଭାଇସ୍‌ରାୟ ଲର୍ଡ ହାର୍ଡିଞ୍ଜଙ୍କ କୌଣସି କାର୍ଯ୍ୟକଳାପ ତାଙ୍କୁ ଅଛପା ହୋଇ ରହି ନ ଥିଲା । ଆଉ ଏକଥା ବି ସେ ଜାଣିଥିଲେ ଯେ କେବଳ ତାଙ୍କ ପ୍ରତି ଥିବା ଆକ୍ରୋଶ କାରଣରୁ ହାର୍ଡିଞ୍ଜ କୌଣସି କାରଣ ନ ଥାଇ ବି ଓଡ଼ିଆ ଭାଷାଭାଷୀ ଲୋକମାନଙ୍କୁ ହଇରାଣ ହରକତ କରିବା

ଆରମ୍ଭ କରିଦେଇଛନ୍ତି । ୧୯୧୨ ମସିହା ଫେବୃଆରୀ ମାସ ୧୨ ତାରିଖରେ ଲଣ୍ଡନ୍‌ର 'ଲର୍ଡସ୍ ସଭା'ରେ କର୍ଜନ ଭାରତରେ ଇଂରେଜ ସରକାରଙ୍କ ଅନୀତି ବିରୁଦ୍ଧରେ ତୀବ୍ର ସ୍ୱର ଉତ୍ତୋଳନ କରିଥିଲେ । କେଉଁ କାରଣରୁ ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ଉଠାଇ ନିଆଗଲା ହାର୍ଡିଞ୍ଜ ତାହାର ଜବାବ ଦିଅନ୍ତୁ ବୋଲି ଦାବି କଲେ । ଏହି ଅବସରରେ ହାର୍ଡିଞ୍ଜଙ୍କ ଅପରିଣାମଦର୍ଶିତା ଆଡକୁ ଅଙ୍ଗୁଳି ନିର୍ଦ୍ଦେଶ କରି କର୍ଜନ କହିଥିଲେ, ଓଡ଼ିଶା ଏବଂ ବିହାର ଦୁଇଟି ଭିନ୍ନ ପ୍ରଦେଶ । ଏଠାରେ ରହୁଥିବା ଲୋକମାନଙ୍କର ପରସ୍ପର ମଧ୍ୟରେ କୌଣସି ସମ୍ପର୍କ ନାହିଁ । ପ୍ରାକୃତିକ ବା ଭୌଗୋଳିକ ଗଠନ ଦୃଷ୍ଟିରୁ ମଧ୍ୟ ଏହି ଦୁଇ ସ୍ଥାନ ପରସ୍ପର ଠାରୁ ଅଲଗା । ଖାସ୍ ସେହି କାରଣରୁ ଆଜି ଯାଏ ଦୁଇ ପ୍ରଦେଶ ମଧ୍ୟରେ ରେଳ ଚଳାଚଳ ସମ୍ଭବ ହୋଇ ପାରିନାହିଁ । ତେଣୁ ବିହାର ସହ ଓଡ଼ିଶାକୁ ମିଶାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଅତ୍ୟନ୍ତ ଅପରିଣାମଦର୍ଶିତା ହେବ । ଏହିଠାରେ ସେ ସ୍ପଷ୍ଟ କରିଦେଇଥିଲେ ଯେ, ଭାରତରେ ଥିବା ଭାଇସ୍‌ରାୟଙ୍କର କୂଟନୀତି କେବେ ବି ସଫଳ ହେବନାହିଁ । ଦିନେ ନା ଦିନେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେବ ।

ସମସ୍ତ ପ୍ରକାର ବିରୋଧ, ପ୍ରତିବାଦ, ଆନ୍ଦୋଳନ ସତ୍ତ୍ୱେ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହୋଇଗଲା ଏବଂ ମଧୁସୂଦନ ବିହାର-ଓଡ଼ିଶା ପ୍ରଦେଶ ଲେଜିସ୍‌ଲେଟିଭ୍ କାଉନ୍‌ସିଲକୁ ସଭ୍ୟ ଭାବରେ ମନୋନୀତ ହୋଇ ଆସିଲେ । ୧୯୧୩ ମସିହା ଜାନୁଆରୀ ମାସ ୨୦ ତାରିଖରେ ସେ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ କାଉନ୍‌ସିଲର ସଭ୍ୟ ଭାବରେ ଶପଥ ନେଲେ । ଏହି ଶପଥ ଗ୍ରହଣ ଅବସରରେ ମଧୁସୂଦନ ତାଙ୍କର ପ୍ରଥମ ଅଭିଭାଷଣ ପ୍ରଦାନ କରି କହିଥିଲେ- 'ନିକଟ ଭବିଷ୍ୟତରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ନିଶ୍ଚୟ ସ୍ୱୀକୃତି ପାଇବ ।' ଏହାର ଅଳ୍ପକାଳ ପରେ ମଧୁସୂଦନ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲରୁ ଇମ୍ପେରିଆଲ କାଉନ୍‌ସିଲ ବା ଇଣ୍ଡିଆନ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲକୁ ସଭ୍ୟ ଭାବରେ ନିର୍ବାଚିତ ହେଲେ । ୧୯୧୩ ମସିହା ଜାନୁଆରୀ ମାସ ୨୭ ତାରିଖରେ ଇମ୍ପେରିଆଲ କାଉନ୍‌ସିଲରେ ଶପଥ ଗ୍ରହଣ କରି ସେ ଆଉ ଏକ ସର୍ବକାଳୀନ ଇତିହାସ ସୃଷ୍ଟି କଲେ । ସେ ଥିଲେ ଓଡ଼ିଶାର ପ୍ରଥମ ବ୍ୟକ୍ତି ଯିଏ କି ଇଣ୍ଡିଆନ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲର ସଭ୍ୟ ଭାବରେ ନିର୍ବାଚିତ ହେବାର ଗୌରବ ଅର୍ଜନ କରି ପାରିଥିଲେ ।

ଏହି ଅବସରରେ ଓଡ଼ିଶା ଡିଭିଜନ୍‌ର କମିଶନର ମିଷ୍ଟର ଡବ୍‌ଲ୍ୟୁ. ଇଗରଟନ୍ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇ ଏକ ପତ୍ରରେ ଉଲ୍ଲେଖ କରିଥିଲେ ଯେ, 'ଆପଣ ହେଉଛନ୍ତି ଯଥାର୍ଥରେ ଓଡ଼ିଶାର କୁଳବୃଦ୍ଧ ।' ବାସ୍ତବରେ ସେ କେବଳ କୁଳବୃଦ୍ଧ ନ ଥିଲେ; ସେ ଥିଲେ ଓଡ଼ିଶାର ପ୍ରଥମ ବନ୍ଦନୀୟ ପୁରୁଷ, ଯାହାଙ୍କ ସ୍ଥାନ ଆଜି ବି ଅପୂରଣୀୟ ହୋଇ ରହିଛି । ଏହା କେବେ ଯେ ପୂରଣ ହେବ ତାହା କହିବା କଷ୍ଟକର ।

## ଆଇନ୍ ପ୍ରଣେତା

୧୯୧୩ ମସିହାରେ ଇଣ୍ଡିଆନ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲର ସଭ୍ୟ ଭାବରେ ଶପଥ ନେଇ ମଧୁସୂଦନ ତିନିବର୍ଷ କାଳ ଅର୍ଥାତ୍ ୧୯୧୬ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ସେତେବେଳେ ଇମ୍ପେରିଆଲ କାଉନ୍‌ସିଲ ବା ଇଣ୍ଡିଆନ୍ ଲେଜିସଲେଟିଭ କାଉନ୍‌ସିଲକୁ ଭରତର 'ସର୍ବୋଚ୍ଚ ବିଧାନସଭା' ବୋଲି ବିବେଚନା କରାଯାଉଥିଲା । ଏଥିରେ ଯୋଗଦେଇ ମଧୁସୂଦନ ନିଜକୁ ଜଣେ ନିପୁଣ ପ୍ରତ୍ୟୁତ୍ପନ୍ନମତି ବୈଧାନିକ ବା ଆଇନପ୍ରଣେତା ଭାବରେ ପ୍ରତିଷ୍ଠା କରି ପାରିଥିଲେ ।

ଇମ୍ପେରିଆଲ କାଉନ୍‌ସିଲରେ ରେଳପଥ ଜାତୀୟକରଣ କରିବା ଲାଗି ମଧୁସୂଦନଙ୍କର ଯୁକ୍ତି ଓ ଦାବି ତାଙ୍କୁ ଜଣେ ଦୂରଦର୍ଶୀ ଚିନ୍ତାନାୟକର ମାନ୍ୟତା ପ୍ରଦାନ କରିଛି । କାରଣ ଆଜି ଜାତୀୟକରଣକୁ ନେଇ ସମଗ୍ର ବିଶ୍ୱ ପୃଷ୍ଠଭୂମିରେ ଯେଉଁ ଜାଗରଣ ସୃଷ୍ଟି ହୋଇଛି ମଧୁସୂଦନ ଭାରତରେ ତାହାର ଆଦ୍ୟ ପ୍ରବର୍ତ୍ତକ ଥିଲେ । ସେହିଭଳି ଜିଲ୍ଲାବୋର୍ଡ ଓ ମ୍ୟୁନିସପାଲିଟି ଭଳି ସ୍ଥାନୀୟ ସାୟତ୍ତ ସଂସ୍ଥାଗୁଡ଼ିକର କାର୍ଯ୍ୟ ପରିସର ବୃଦ୍ଧି କରିବା ନିମନ୍ତେ ସେ ଯଥାସାଧ୍ୟ ଉଦ୍ୟମ କରିଥିଲେ । ଇମ୍ପେରିଆଲ କାଉନ୍‌ସିଲରେ ମଧୁସୂଦନ ସବୁବେଳେ ସତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରୁଥିଲେ । ଏହି ସମୟରେ ଇମ୍ପେରିଆଲ କାଉନ୍‌ସିଲରେ 'ଭାରତୀୟ କମ୍ପାନୀ ବିଲ୍' ଆଗତ କରାଗଲା । କିନ୍ତୁ ସେହି ବିଲ୍ ସମ୍ପୂର୍ଣ୍ଣ ଭାବରେ ଓଡ଼ିଶାର ସ୍ୱାର୍ଥ ବିରୋଧରେ ଥିଲା । ଏହାଦ୍ୱାରା ସ୍ଥାନୀୟ ବ୍ୟବସାୟୀମାନଙ୍କର କୌଣସି ଉନ୍ନତି ହେବ ନାହିଁ ବୋଲି ଜାଣି ମଧୁସୂଦନ ତାହାର ତୀବ୍ର ବିରୋଧ କରିଥିଲେ । ଏହା ସତ୍ତ୍ୱେ 'ଭାରତୀୟ କମ୍ପାନୀ ବିଲ୍' ଗୃହୀତ ହୋଇଥିଲା ଏବଂ ଏହା ମଧୁସୂଦନଙ୍କୁ ଗଭୀର ଦୁଃଖ ଦେଇଥିଲା । ୧୯୧୬ ମସିହାରେ ସେ ଇମ୍ପେରିଆଲ କାଉନ୍‌ସିଲରୁ ଓହରି ଆସିଥିଲେ ।

୧୯୧୭ ମସିହାରେ ଭାରତର ଶାସନ ସଂସ୍କାର ସମ୍ପର୍କିତ ମଣ୍ଟେଗୁ-ଚେମ୍ସଫୋର୍ଡ ରିପୋର୍ଟ ପ୍ରକାଶ ପାଇଲା । ଏହି ରିପୋର୍ଟରେ ଭାଇସରାୟ ଲର୍ଡ ହାର୍ଡିଞ୍ଜଙ୍କ ଶାସନ ସଂସ୍କାରକୁ କଠୋର ସମାଲୋଚନା କରାଯିବା ସହିତ ଏମିତି କେତେକ ପଦକ୍ଷେପ ବିଷୟରେ ଅବତାରଣା କରାଯାଇଥିଲା ଯାହା କି ମଧୁସୂଦନଙ୍କ ଭଳି ଅନେକ ଦିଗ୍‌ଦର୍ଶୀ ଜନନାୟକଙ୍କ ମୁଣ୍ଡରୁ ଚିନ୍ତାର ବୋଝ ହାଲକା କରି ଦେଇଥିଲା । ଏହି ରିପୋର୍ଟରେ ଓଡ଼ିଶାକୁ ସତନ୍ତ୍ର ପ୍ରଦେଶ ଘୋଷଣା କରାଯାଇ ନ ଥିଲା ଏକଥା ସତ; ତେବେ ଏହାକୁ ପ୍ରଥମଥର ପାଇଁ 'ସବ୍-ଷ୍ଟେଟ୍ ବା ସବ୍-ପ୍ରୋଭିନ୍‌ସ' ପାହ୍ୟା ପ୍ରଦାନ କରାଯାଇଥିଲା । ଯଦିଓ ସେତେବେଳେ ଏହି ପାହ୍ୟା ପ୍ରଦାନର କୌଣସି ମୂଲ୍ୟ ନ ଥିଲା କି ଏହାଦ୍ୱାରା ଓଡ଼ିଶାର ଅବସ୍ଥାରେ ଉନ୍ନତି ଘଟିବାର ସାମାନ୍ୟ ବି ସମ୍ଭାବନା ନ ଥିଲା, ତଥାପି ଭବିଷ୍ୟତରେ ଓଡ଼ିଶା ଯେ ଏକ ସତନ୍ତ୍ର ପ୍ରଦେଶରେ ପରିଣତ ହେବ ତାହାର ସମ୍ଭାବନା ମଣ୍ଟେଗୁ-ଚେମ୍ସଫୋର୍ଡ ରିପୋର୍ଟରୁ ଉଜ୍ଜ୍ୱଳ ହୋଇ ଦେଖାଯାଇଥିଲା । ମଣ୍ଟେଗୁ-ଚେମ୍ସଫୋର୍ଡ ରିପୋର୍ଟରେ ଓଡ଼ିଶା ସମ୍ପର୍କରେ କୁହାଯାଇଥିଲା- 'ଓଡ଼ିଶା ଓ ବିହାର ବିଷୟ ବିଚାର କରି ଆମ୍ଭେମାନେ ଏହି ମତ ଦେଉଅଛୁ ଯେ ଖୁବ୍ ନିକଟରେ ଏହି ରାଜ୍ୟ ଦୁଇଟିକୁ ପ୍ରାଦେଶିକ ପାହ୍ୟା ମିଳିବା ବିଷୟ ସ୍ଥିର କରିଦେବା ଉଚିତ ହେବ ।'

ମଣ୍ଟେଗୁ-ଚେମ୍ସଫୋର୍ଡ ସେମାନଙ୍କ ସଂସ୍କାର ସମ୍ବଳିତ ରିପୋର୍ଟରେ ଯେଉଁ ଗୋଟିଏ ଶବ୍ଦକୁ ବାରମ୍ବାର ବ୍ୟବହାର କରିଥିଲେ ତାହା ହେଉଛି 'ସବ୍-ପ୍ରୋଭିନ୍‌ସ' । ସେମାନେ ସେମାନଙ୍କର ରିପୋର୍ଟରେ ମଧ ଓଡ଼ିଶାକୁ ଏକ 'ସବ୍-ପ୍ରୋଭିନ୍‌ସ' ଭାବରେ ସ୍ୱୀକାର କରିଥିଲେ । ସବୁଠୁ ଖୁସିର ବିଷୟ, ମଧୁସୂଦନଙ୍କ ଦ୍ୱାରା ପ୍ରଭାବିତ ହୋଇ ହିଁ ସେମାନେ ଏହି ଶବ୍ଦ ପ୍ରୟୋଗ କରିବାର ପ୍ରେରଣା ପାଇଥିଲେ । ତଥ୍ୟରୁ ଜଣାପଡ଼େ, ୧୯୧୩ ମସିହାରେ ଇମ୍ପେରିଆଲ କାଉନ୍‌ସିଲ୍‌ରେ ମଧୁସୂଦନ ଓଡ଼ିଶାକୁ ସତନ୍ତ୍ର ପ୍ରଦେଶର ମାନ୍ୟତା ଦେବାଲାଗି ଭାଷଣ ଦେଉଥିବା ବେଳେ ଓଡ଼ିଶାକୁ ଗୋଟିଏ 'ସବ୍-ପ୍ରୋଭିନ୍‌ସ' କରାଯାଉ ବୋଲି ବାରମ୍ବାର ଦାବି କରୁଥିଲେ । ଇମ୍ପେରିଆଲ କାଉନ୍‌ସିଲରେ ମଧୁସୂଦନଙ୍କ ପ୍ରଭାବଶାଳୀ ପ୍ରତିନିଧିତ୍ୱ ହିଁ ତାଙ୍କୁ ପରବର୍ତ୍ତୀକାଳରେ ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରୀ ପଦରେ ଅଧିଷ୍ଠିତ କରିବାରେ ସହାୟକ ହୋଇଥିଲା ।

# ଜାତିପ୍ରାଣ ମଧୁସୂଦନ

ବିହାର-ଓଡ଼ିଶା ପ୍ରଦେଶର ସର୍ବପ୍ରଥମ ଭାରତୀୟ ଗଭର୍ଣ୍ଣର ଲର୍ଡ ସିହ୍ନା ମଧୁସୂଦନଙ୍କ ଦକ୍ଷତା, ପ୍ରତ୍ୟୁତ୍ପନ୍ନମତିତା ତଥା ଦୂରଦୃଷ୍ଟି ସମ୍ପର୍କରେ ଭଲଭାବରେ ଅବଗତ ଥିଲେ । ତେଣୁ ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରିମଣ୍ଡଳ ଗଠନ କାଳରେ ୧୯୨୧ ମସିହାରେ ସେ ମଧୁସୂଦନଙ୍କୁ ସେଥିରେ ଯୋଗ ଦେବା ଲାଗି ନିଜ ତରଫରୁ ଆମନ୍ତ୍ରଣ ଜଣାଇଲେ ଏବଂ ସ୍ଥାନୀୟ ସାୟତ୍ତ ସଂସ୍ଥା, ଜନସାସ୍ଥ୍ୟ ବିଭାଗ ଏବଂ ନିର୍ମାଣ ବିଭାଗ ଦାୟିତ୍ୱ ଗ୍ରହଣ କରିବା ଲାଗି ଅନୁରୋଧ କଲେ ।

୧୯୨୧ ବର୍ଷଟି ଥିଲା ଭାରତୀୟ ସାଧୀନତା ଆନ୍ଦୋଳନର ସବୁଠାରୁ ସମ୍ବେଦନଶୀଳ ତଥା ବିଦ୍ରୋହର ବର୍ଷ । ଏହି ସମୟରେ ମଣ୍ଟେଗୁ-ଚେମ୍ସଫୋର୍ଡ ରିପୋର୍ଟ ପ୍ରକାଶ ହେବା ବେଳକୁ ବ୍ରିଟିଶ ସରକାର ସାରା ଭାରତବର୍ଷରେ 'ରାଓଲଟ୍ ବିଲ' ପ୍ରବର୍ତ୍ତନ କରିଥାନ୍ତି । ରାଓଲଟ ବିଲ ପ୍ରବର୍ତ୍ତନ ହେବା ଫଳରେ ଦେଶର ଚାରିଆଡେ ଅରାଜକତା ସୃଷ୍ଟି ହୋଇଥାଏ । ସରକାର ବିଭିନ୍ନ ସ୍ଥାନରେ ଦମନଲୀଳା ଚଳେଇଥାନ୍ତି । ଜାତିର ପିତା ମହାତ୍ମା ଗାନ୍ଧୀ ଏହାକୁ ବିରୋଧ କରି 'ଅସହଯୋଗ ଆନ୍ଦୋଳନ'ର ଡାକରା ଦେଇଥାନ୍ତି ।

ଅପରପକ୍ଷରେ, ମଣ୍ଟେଗୁ-ଚେମ୍ସଫୋର୍ଡ ରିପୋର୍ଟକୁ 'ନିଖିଳ ଭାରତ କଂଗ୍ରେସ' ବର୍ଜନ କରିଥାଏ । କାରଣ ଏହି ରିପୋର୍ଟ ଭାରତୀୟ ରାଜନୈତିକ ଅନୁଷ୍ଠାନଗୁଡ଼ିକୁ ଯେତେ ପରିମାଣରେ ସମୃଦ୍ଧ କରୁଥିଲା ସ୍ଥାନୀୟ ଲୋକ ପ୍ରତିନିଧିମାନଙ୍କ କ୍ଷମତାକୁ ସେତିକି ପରିମାଣରେ ସଙ୍କୁଚିତ କରି ଦେଇଥିଲା । ସ୍ଥାନୀୟ ଲୋକ ପ୍ରତିନିଧିମାନଙ୍କ ହାତରେ କୌଣସି କ୍ଷମତା ନ ଥିଲା କହିଲେ ଚଳେ । ସେମାନଙ୍କ ହାତକୁ କିଛି କିଛି ଦାୟିତ୍ୱ ହସ୍ତାନ୍ତର କରାଯାଇଥିଲା ଏକଥା ସତ; ମାତ୍ର ସେମାନଙ୍କୁ ସମ୍ପୂର୍ଣ୍ଣ ସାଧୀନତାର ସହିତ କାର୍ଯ୍ୟ କରିବା ପାଇଁ କ୍ଷମତା ପ୍ରଦାନ କରାଯାଇ ନ ଥିଲା । ସେମାନେ ଯାହା କାର୍ଯ୍ୟ କରୁଥିଲେ ତାହା ପ୍ରାଦେଶିକ ଗଭର୍ଣ୍ଣରମାନଙ୍କର ପୂର୍ଣ୍ଣ ନିୟନ୍ତ୍ରଣ ଅଧୀନରେ ରହି, ସେମାନଙ୍କ ଠୁ ପରାମର୍ଶ ନେଇ ତଥା ସେମାନଙ୍କର ଇଚ୍ଛା ଅନୁସାରେ ହିଁ କରୁଥିଲେ । ସେଥିପାଇଁ ନିଖିଳ ଭାରତ କଂଗ୍ରେସ ମଣ୍ଟେଗୁ-ଚେମ୍ସଫୋର୍ଡ ରିପୋର୍ଟ ବଦଳରେ କଂଗ୍ରେସ-ଲିଗ୍‌ର ସୁପାରିଶକୁ କାର୍ଯ୍ୟକାରୀ କରିବା ପାଇଁ ଦାବି କରୁଥିଲା । ଓଡ଼ିଶାରେ ମଧ ସେହି ବିଦ୍ରୋହର ଛାୟା ସ୍ୱଷ୍ଟ ହୋଇ ଉଠିଥିଲା । ଏହିସବୁ ଦୃଷ୍ଟିରୁ ବିଚାରକଲେ ୧୯୨୧ ମସିହାଟି ଥିଲା ଅତି ସମ୍ବେଦନଶୀଳ ବର୍ଷ । ଆଉ ଏଭଳି ଏକ ପରିପ୍ରେକ୍ଷୀରେ ମଧୁସୂଦନ ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ ଓ ମନ୍ତ୍ରୀପଦ ଗ୍ରହଣ କଲେ । ସେତେବେଳକୁ ତାଙ୍କୁ ହୋଇଥାଏ ୭୩ ବର୍ଷ ।

ତେବେ ଦୁଃଖର ବିଷୟ, ମଧୁସୂଦନଙ୍କର ମନ୍ତ୍ରୀପଦ ଗ୍ରହଣ ଓଡ଼ିଶାର ଅନେକ ଲୋକ ବିଶେଷ କରି କଂଗ୍ରେସର ସମର୍ଥକଙ୍କ ପାଇଁ ଗ୍ରହଣୀୟ ହେଲାନାହିଁ । ମଧୁସୂଦନ ମୁଖ୍ୟତଃ ମଣ୍ଟେଗୁ-ଚେମ୍ସଫୋର୍ଡ ରିପୋର୍ଟର ସୁପାରିସ ଅନୁଯାୟୀ ଭାରତରେ ପ୍ରଚଳିତ ନୂତନ ଶାସନ ବ୍ୟବସ୍ଥା ଅଧୀନରେ ମନ୍ତ୍ରୀପଦ ବରଣ କରିଥିଲେ । ସେହି କାରଣରୁ ସେ ଓଡ଼ିଶା କଂଗ୍ରେସର ପ୍ରତିନିଧି ତଥା ସମର୍ଥକମାନଙ୍କର ଆକ୍ରୋଶର ଶିକାର ପାଲଟିଗଲେ । ତାଙ୍କ ବିରୁଦ୍ଧରେ ରାଜ୍ୟର ଚାରିଆଡେ ବିକ୍ଷୋଭ ପ୍ରଦର୍ଶନ କରାଗଲା । ଅନେକ ସ୍ଥାନରେ ତାଙ୍କର କୁଶ ପୁତ୍ତଳିକା ଦାହ କରାଗଲା ।

କିନ୍ତୁ ମଧୁସୂଦନ ତାହାକୁ ନେଇ ବିଚଳିତ ନ ଥିଲେ । କାରଣ ସେ ଜଣେ ସାଧାରଣ ମଣିଷ ନ ଥିଲେ; ସେ ଥିଲେ ଦୂରଦ୍ରଷ୍ଟା । ସ୍ୱତନ୍ତ୍ର ଆଧୁନିକ ଓଡ଼ିଶା ଚିତ୍ରପଟ ତାଙ୍କୁ ଜଳଜଳ ହୋଇ ଦେଖାଯାଉଥିଲା । ସେ ଇଂରେଜ ସରକାରଙ୍କ ଆହ୍ୱାନକୁ ସମ୍ମାନ ଜଣାଇ ମନ୍ତ୍ରୀପଦ ଗ୍ରହଣ କରିଥିବା ଯୋଗୁ ହିଁ ପରବର୍ତ୍ତୀ କାଳରେ ଭାରତୀୟମାନେ ତଥା ଓଡ଼ିଶା ପ୍ରଦେଶର ଜନସାଧାରଣ ସାୟତ୍ତ ଶାସନ ଅଧିକାର ହାସଲ କରିବାରେ ସକ୍ଷମ ହୋଇ ପାରିଥିଲେ ।

ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରୀ ଥିବାବେଳେ ମଧୁସୂଦନ ଦୁଇଟି ଅତି ଗୁରୁତ୍ୱପୂର୍ଣ୍ଣ ଆଇନ୍ ପ୍ରଣୟନ କରିଥିଲେ ଯାହା ଆଜି ବି ତା'ର ମହତ୍ତ୍ୱ ଜାରି ରଖିଛି । ପ୍ରଥମ ଆଇନ୍‌ରେ ନିର୍ବାଚିତ ଲୋକ ପ୍ରତିନିଧିମାନଙ୍କୁ 'ରିକଲ୍' ବା ଫେରାଇ ଆଣିବାର ବ୍ୟବସ୍ଥା ରଖାଯାଇଥିଲା । ପୂର୍ବରୁ ଜନସାଧାରଣଙ୍କର କେବଳ କାମ ଥିଲା ପ୍ରତିନିଧିମାନଙ୍କୁ ଭୋଟ ଦେଇ ଜିତେଇ ଦେବା । କିନ୍ତୁ ଏହି ଆଇନ୍ ବଳରେ ଯଦି ପ୍ରତିନିଧିମାନେ ସେମାନଙ୍କର ମନ ମୁତାବକ କାର୍ଯ୍ୟ ନ କରନ୍ତି ବା କରିବାରେ ଅସମର୍ଥ ହୁଅନ୍ତି ସେମାନଙ୍କୁ ଜିଲ୍ଲାବୋର୍ଡ ବା ଲୋକାଲବୋର୍ଡମାନଙ୍କରୁ ଜନ ସାଧାରଣ ଫେରାଇ ଆଣି ପାରିବାର ଅଧିକାର ପାଇଲେ । ଦ୍ୱିତୀୟ ଆଇନ୍ ବଳରେ ଜିଲ୍ଲାବୋର୍ଡ ବା ଲୋକାଲବୋର୍ଡ ଆଦିରେ ଅନୁନ୍ନତ ସମ୍ପ୍ରଦାୟର ଲୋକମାନଙ୍କର ପ୍ରତିନିଧିତ୍ୱ ବ୍ୟବସ୍ଥା ରହିଲା । ମନ୍ତ୍ରିତ୍ୱର ଦ୍ୱିତୀୟବର୍ଷ ଅର୍ଥାତ୍ ୧୯୨୨ ମସିହା ଅଗଷ୍ଟ ୨୫ ତାରିଖରେ ମଧୁସୂଦନ ସେଣ୍ଟ୍ରାଲ ଲେଜିସଲେଟିଭ କାଉନ୍‌ସିଲର ପ୍ରେସିଡେଣ୍ଟ ସାର ଫ୍ରେଡେରିକ୍ ହ୍ୱାଇଟ୍‌ଙ୍କୁ ପତ୍ର ଲେଖି ଏ ବିଷୟରେ ଜଣାଇଥିଲେ ।

ମଧୁସୂଦନ ମାତ୍ର ତିନିବର୍ଷ ମନ୍ତ୍ରୀ ଭାବରେ କାର୍ଯ୍ୟ କରିଥିଲେ । ବାସ୍ତବରେ ଇଂରେଜ କର୍ମକର୍ତ୍ତାଙ୍କ ଅଧୀନରେ ମନ୍ତ୍ରୀ ଭାବରେ ରହି କାମ କରିବାରେ ସେ ସନ୍ତୋଷ

ପାଉ ନ ଥିଲେ । ଦ୍ୱିତୀୟତଃ, ଇଂରେଜ ଗଭର୍ଣ୍ଣରଙ୍କ କର୍ତ୍ତୃତ୍ୱାଧୀନ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହୋଇଥିବା ହେତୁ ସେ ତାଙ୍କର ପ୍ରିୟ ଓଡ଼ିଶାବାସୀଙ୍କର ବିଶ୍ୱାସ ଭାଜନ ହୋଇ ପାରୁ ନ ଥିଲେ । ସେଥିଲାଗି ସେ ମନ୍ତ୍ରୀପଦରୁ ଇସ୍ତଫା ଦେବା ଲାଗି ମନସ୍ଥ କରିଥିଲେ । ତେବେ ଉପଯୁକ୍ତ ସୁଯୋଗର ଅପେକ୍ଷାରେ ଥିଲେ । ୧୯୨୨ ମସିହା ଫେବୃଆରୀ ୨୧ ତାରିଖ ଦିନ ସେ କାଉନ୍‌ସିଲରେ ଦାବି କଲେ ଯେ, ସ୍ଥାନୀୟ ସ୍ୱାୟତ୍ତଶାସନ ବିଭାଗୀୟ ମନ୍ତ୍ରୀପଦ ସମ୍ପୂର୍ଣ୍ଣ ଭାବରେ ଅବୈତନିକ ହେବା ଆବଶ୍ୟକ । ସେ ନିଜର ମତବ୍ୟକ୍ତ କରି କହିଥିଲେ- 'ମ୍ୟୁନିସପାଲିଟି, ଲୋକାଲବୋର୍ଡ ଓ ଜିଲ୍ଲାବୋର୍ଡ ଆଦି ଯେଉଁ ସ୍ୱାୟତ୍ତଶାସନ ଅନୁଷ୍ଠାନ ସବୁ ରହିଛି, ସେଗୁଡିକର ସଭ୍ୟ ଓ କର୍ମକର୍ତ୍ତାଗଣ ଅବୈତନିକ ଭାବରେ ସମସ୍ତେ କାର୍ଯ୍ୟ କରିଥାନ୍ତି । ତେଣୁ ସେହି ବିଭାଗର ମନ୍ତ୍ରୀ ଯଦି ତାଙ୍କର କାର୍ଯ୍ୟ ପାଇଁ ମାସକୁମାସ ବେତନ ଗ୍ରହଣ କରନ୍ତି, ତା'ହେଲେ ସେ ସ୍ୱାୟତ୍ତଶାସନ ବିଭାଗ କର୍ମଚାରୀମାନଙ୍କ ଠାରୁ ଅଲଗା ହୋଇ ପଡ଼ିବେ । ସେଥିଲାଗି ମୋର ମତ ହେଉଛି, ସ୍ୱାୟତ୍ତଶାସନ ବିଭାଗ ମନ୍ତ୍ରୀପଦ ସମ୍ପୂର୍ଣ୍ଣ ଅବୈତନିକ ହେବା ବାଞ୍ଛନୀୟ ।'

ମଧୁସୂଦନଙ୍କ ଯୁକ୍ତି ତ୍ରୁଟିଶୂନ୍ୟ ତଥା ଶତପ୍ରତିଶତ ଯୁକ୍ତିଯୁକ୍ତ ଥିଲା । ଏହା ସତ୍ତ୍ୱେ ସରକାର ତାଙ୍କର ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ । ମଧୁସୂଦନ ଏଭଳି ଏକ ଅବସରକୁ ଅପେକ୍ଷା କରି ରହିଥିଲେ । ସେ ୧୯୨୩ ମସିହା ଫେବୃଆରୀ ୭ ତାରିଖରେ ବିହାର-ଓଡ଼ିଶା ଗଭର୍ଣ୍ଣର ସାର ଏଚ୍. ହୁଇଲରଙ୍କୁ ଏକ ପତ୍ର ଲେଖି ଜଣାଇଲେ ଯେ ତାଙ୍କୁ ମନ୍ତ୍ରୀ ହିସାବରେ ଅବୈତନିକ ଭାବରେ କାର୍ଯ୍ୟ କରିବାକୁ ତଥା ଓକିଲାତି କରି ଜୀବିକା ନିର୍ବାହ କରିବାକୁ ଅନୁମତି ଦିଆଯାଉ । ମାତ୍ର ମଧୁସୂଦନଙ୍କର ଏ ପ୍ରସ୍ତାବକୁ ବି ଗ୍ରହଣ କରିନେବା ଗଭର୍ଣ୍ଣର ହୁଇଲରଙ୍କ ପକ୍ଷରେ ସମ୍ଭବ ନ ଥିଲା । ମଧୁସୂଦନ ବି ଆଉ ନିଜର ସ୍ୱାଭିମାନ ସହିତ ବେଶୀ ଦିନ ସାଲିସ୍ କରିବାକୁ ଚାହୁଁ ନ ଥିଲେ । ୧୯୨୩ ମସିହା ମାର୍ଚ୍ଚ ମାସ ୪ ତାରିଖ ଦିନ ସେ ବିହାର-ଓଡ଼ିଶା ମନ୍ତ୍ରିମଣ୍ଡଳରୁ ଇସ୍ତଫା ପ୍ରଦାନ କଲେ ଏବଂ କଟକ ଫେରିଆସି ପୁନର୍ବାର ଓକିଲାତି କରିବା ଆରମ୍ଭ କଲେ ।

# ମହିଳା ବିକାଶର ଚିନ୍ତା

ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲର ମନ୍ତ୍ରୀ ଥିବା କାଳରେ ୧୯୨୧ ମସିହା ନଭେମ୍ବର ମାସ ୨୩ ତାରିଖରେ ମଧୁସୂଦନ ଭାଷଣ ଦେଇ କହିଥିଲେ- 'ନାରୀତ୍ୱ କୌଣସି ଅକ୍ଷମତା ନୁହେଁ । ଏହା ଏକ ଗୌରବଶାଳୀ ମହିମାଦୀପ୍ତ ସମ୍ମାନର ଅଧିକାରୀ ।' ମଧୁସୂଦନଙ୍କ ଅନ୍ତର ଭିତରେ ନାରୀ ସମାଜ ପ୍ରତି କିଭଳି ମହତ୍ ଭାବନା ଜମା ହୋଇ ରହିଥିଲା ସେକଥା ଉପରୋକ୍ତ ଉକ୍ତିରୁ ସହଜରେ ଅନୁମାନ କରାଯାଇପାରେ । ସେ ସବୁବେଳେ ନାରୀ ସମାଜକୁ ମାତୃଜାତି ବୋଲି ସମ୍ବୋଧନ କରୁଥିଲେ ଏବଂ ନାରୀ ସମାଜର ପ୍ରଗତି ଘଟିଲେ ସମାଜର ବହୁବିଧ ଉନ୍ନତି ସମ୍ଭବ ହୋଇ ପାରିବ ବୋଲି ହୃଦ୍‌ବୋଧ କରୁଥିଲେ । ସେଥିଲାଗି ସେ ନାରୀଜାତିକୁ ତା'ର ସମ୍ମାନ ତଥା ଅଧିକାର ଫେରାଇଦେବା ଲାଗି ସତତ ସଂଗ୍ରାମ ଚଳାଇ ରଖିଥିଲେ ।

ଯେଉଁ ସମୟରେ ମଧୁସୂଦନ ନାରୀ ସମାଜର ପ୍ରଗତି କଥା ଚିନ୍ତା କରୁଥିଲେ ସେତେବେଳେ ନାରୀମାନେ ଅସୂର୍ଯ୍ୟଂପଶ୍ୟା ଥିଲେ । ପୁରୁଷ-ପ୍ରଧାନ ସମାଜରେ ସର୍ବସମକ୍ଷକୁ ଆସିବା ପାଇଁ ସେମାନଙ୍କୁ ଅଧିକାର ଦିଆଯାଉ ନ ଥିଲା । ନାରୀଶିକ୍ଷା କଥା ନ କହିବା ଭଲ । ଝିଅଟିଏ ପାଠ ପଢ଼ିଲେ ପରିବାର ଉପରକୁ ଯେ ଘୋର ବିପତ୍ତି ମାଡି ଆସିବ ଏଭଳି ଏକ ଅନ୍ଧବିଶ୍ୱାସ ଲୋକମାନଙ୍କ ମଧ୍ୟରେ ବଦ୍ଧମୂଳ ହୋଇ ରହି ଯାଇଥିଲା । ସଂସାରର ଏହି ଅନ୍ଧବିଶ୍ୱାସ ସମ୍ପର୍କରେ ସଚେତନତା ସୃଷ୍ଟି ପାଇଁ ବ୍ୟାସକବି ଫକୀର ମୋହନ ୧୮୯୮ ମସିହାରେ ତାଙ୍କର ବହୁ ଚର୍ଚ୍ଚିତ ଗଳ୍ପ 'ରେବତୀ' ରଚନା କରିଥିଲେ । ସେ ଯା'ହେଉନା କାହିଁକି, ଠିକ୍ ଏଭଳି ଏକ ପ୍ରେକ୍ଷାପଟରେ ମଧୁସୂଦନ ନାରୀଶିକ୍ଷା ବିଷୟରେ କେବଳ ଚିନ୍ତା କରି ନ ଥିଲେ; ଅଧିକନ୍ତୁ ବିଧିବଦ୍ଧ ଭାବରେ ଉଦ୍ୟମ ଆରମ୍ଭ କରିଦେଇଥିଲେ । ୧୯୦୮ ମସିହାରେ ତାଙ୍କରି ପ୍ରଚେଷ୍ଟା ବଳରେ କଟକ ଠାରେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପିତ ହେଲା । ଏଠାରେ ବାଳିକା ମାନଙ୍କୁ ମ୍ୟାଟ୍ରିକ୍ ପର୍ଯ୍ୟନ୍ତ ଶିକ୍ଷାଦାନ କରାଯିବାର ବନ୍ଦୋବସ୍ତ ରହିଥିଲା । ଏହି ବିଦ୍ୟାଳୟରୁ ଦୁଇଜଣ ଛାତ୍ରୀ ମ୍ୟାଟ୍ରିକ୍ୟୁଲେସନ ପାସ୍ କରି ଓଡ଼ିଶାର ପ୍ରଥମ ଶିକ୍ଷିତ ବାଳିକା ହେବାର ସୌଭାଗ୍ୟ ଅର୍ଜନ କରି ପାରିଥିଲେ । ସେମାନେ ଥିଲେ, ବିଶ୍ୱନାଥ କରଙ୍କ କନ୍ୟା ନର୍ମଦା କର ଏବଂ ଗଙ୍ଗାଧର ଷଡ଼ଙ୍ଗୀଙ୍କ କନ୍ୟା ଚନ୍ଦ୍ରମୁଖୀ ଷଡ଼ଙ୍ଗୀ । ସେତିକି ନୁହେଁ, ଏହି ଦୁଇଜଣ ହେଉଛନ୍ତି ଓଡ଼ିଶାର ପ୍ରଥମ ମହିଳା ଗ୍ରାଜୁଏଟ

ବା ସ୍ନାତକ । ଏମାନେ ୧୯୧୫ ମସିହାରେ କଲିକତାର ବେଥୁନ୍ କଲେଜରୁ ବି.ଏ. ପାସ୍ କରିଥିଲେ ଏବଂ କିଛି ବର୍ଷ ପାଇଁ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ରୂପେ କାର୍ଯ୍ୟ କରିଥିଲେ ।

ଯେତେବେଳେ ନାରୀର ପାଠ ପଢ଼ିବା ରାସ୍ତାରେ ସାମାଜିକ କୁସଂସ୍କାର ଓ ଅନ୍ଧବିଶ୍ୱାସ ଗୋଟିଏ ଗୋଟିଏ ଶକ୍ତ ପ୍ରାଚୀର ସାଜି ଛିଡ଼ା ହୋଇଥିଲା, ସେତେବେଳେ ନାରୀମାନେ ମୁଣ୍ଡରୁ ଓଢ଼ଣା ଖୋଲି ଭରପୂର ଅଦାଲତରେ ବିଚାରକଙ୍କ ସାମ୍ନାରେ ଓକିଲାତି କରନ୍ତୁ ଏକଥା କଳ୍ପନାତୀତ ଥିଲା । ସେତେବେଳେ ମହିଳାମାନଙ୍କୁ ଓକିଲାତି ବ୍ୟବସାୟ କରିବା ଲାଗି କୌଣସି ସୁଯୋଗ ଦିଆଯାଉ ନ ଥିଲା । ବ୍ରିଟିଶ୍ ସରକାର ମଧ ମହିଳାମାନଙ୍କର ଏହି ଅଧିକାରକୁ କ୍ଷୁଣ୍ଣ କରିବା ଲାଗି ଏକ ବିଧିବଦ୍ଧ ଆଇନ୍ ପ୍ରଣୟନ କରିସାରିଥିଲେ । ୧୮୭୯ ମସିହାରେ 'ଇଣ୍ଡିଆନ୍ ଲିଗାଲ ପ୍ରାକ୍‌ଟିସନର୍ସ ଆକ୍ଟ' ଗୃହୀତ ହୋଇସାରିଥିଲା । ଏହି ଆକ୍ଟରେ ଭାରତର କୋର୍ଟ କଚେରୀମାନଙ୍କରେ ମହିଳାମାନଙ୍କୁ ଆଇନ୍‌ଜୀବୀ ଭାବରେ କାର୍ଯ୍ୟ କରିବାକୁ ଦିଆଯିବ ନାହିଁ ବୋଲି ସ୍ପଷ୍ଟ ଉଲ୍ଲେଖ ରହିଥିଲା । ମାତ୍ର ମଧୁସୂଦନ ଏହି ଆଇନ୍ ଏବଂ ନୀତିର ଘୋର ବିରୋଧୀ ଥିଲେ । ମହିଳାମାନେ କିଭଳି ଆଇନ୍ ସେବାର ଅଧିକାର ହାସଲ କରିବେ ସେଥିଲାଗି ସେ ଦିନରାତି ଚିନ୍ତା କରୁଥିଲେ ।

ପୂର୍ବରୁ କୁହାଯାଇଛି ଯେ, ମଧୁସୂଦନ ନିଃସନ୍ତାନ ଥିଲେ । ପତ୍ନୀ ସୌଦାମିନୀଙ୍କ ଦେହାନ୍ତ ବେଳକୁ ସେମାନଙ୍କର କୌଣସି ସନ୍ତାନସନ୍ତତି ହୋଇ ନ ଥିଲେ । ସେଥିଲାଗି ସେ ଦୁଇଟି ଝିଅଙ୍କୁ ପିଲାଟି ବେଳରୁ ପାଳନ ପୋଷଣ କରୁଥିଲେ । ସେମାନଙ୍କର ନାମଥିଲା ଶୈଳବାଳା ଓ ସୁଧାଂଶୁବାଳା ହାଜ୍‌ରା । ସୁଧାଂଶୁବାଳା ୧୯୨୧ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ବି.ଏଲ. ପାସ୍ କରି ସାରିଥିଲେ । ତାଙ୍କର ଆଇନ୍ ବ୍ୟବସାୟ ପ୍ରତି ରୁଚି ଓ ଆଗ୍ରହ ଥିଲା । ମାତ୍ର ବ୍ରିଟିଶ୍ ସରକାରଙ୍କ ଦ୍ୱାରା ପ୍ରଚଳିତ ଆଇନ୍ ତାଙ୍କୁ ସେଥିପାଇଁ ଅନୁମତି ଦେଉ ନ ଥିଲା । ମଧୁସୂଦନଙ୍କର କିନ୍ତୁ ସେ ଆଇନ ପ୍ରତି ସାମାନ୍ୟତମ ସମ୍ମାନ ନ ଥିଲା । ସେ ନିଜର ପାଳିତା କନ୍ୟା ସୁଧାଂଶୁବାଳାଙ୍କୁ ଏକ ମାଧ୍ୟମ ରୂପେ ନେଇ ସମଗ୍ର ମହିଳା ସମାଜକୁ ସେମାନଙ୍କର ଆଇନ୍‌ଗତ ନ୍ୟାଯ୍ୟ ଅଧିକାର ପ୍ରଦାନ କରିବା ଲାଗି ଅଣ୍ଟା ଭିଡ଼ି ଆଗକୁ ବାହାରି ପଡ଼ିଲେ ।

କଲିକତା ବିଶ୍ୱବିଦ୍ୟାଳୟରୁ ବି.ଏଲ. ଡିଗ୍ରୀ ହାସଲ କରିଥିବା ସୁଧାଂଶୁବାଳାଙ୍କୁ ଜଣେ ଓକିଲ ଭାବରେ କାର୍ଯ୍ୟ କରିବାକୁ ଅନୁମତି ଦିଆଯାଉ ବୋଲି ପାଟନା ହାଇକୋର୍ଟରେ ତାଙ୍କର ଓକିଲ ଆବେଦନ କଲେ । ମାତ୍ର 'ଇଣ୍ଡିଆନ୍ ଲିଗାଲ ପ୍ରାକ୍ଟିସନର୍ସ ଆକ୍ଟ' ବଳରେ ତାଙ୍କର ସେହି ଆବେଦନକୁ ଅତି ସହଜରେ ଖାରଜ କରି ଦିଆଗଲା । ଏହାର କିଛି ବର୍ଷ ଆଗରୁ ଆଉ ଜଣେ ମହିଳା ଓକିଲ ହିସାବରେ ତାଲିକାଭୁକ୍ତ ହେବାକୁ କଲିକତା ହାଇକୋର୍ଟରେ ଅପିଲ କରିଥିଲେ ମଧ୍ୟ ତାଙ୍କର ଠିକ୍ ଏହି ଅବସ୍ଥା ହୋଇଥିଲା । କିନ୍ତୁ ସୁଧାଂଶୁବାଳାଙ୍କ ବେଳକୁ ପରିସ୍ଥିତିରେ କିଛିଟା ପରିବର୍ତ୍ତନ ଘଟିଥିଲା । ୧୯୧୯ ମସିହାରେ ବ୍ରିଟେନ୍‌ରେ 'ସେକ୍ସ ଡିସ୍‌କ୍ୱାଲିଫିକେସନ୍ ରିମୁଭାଲ ଆକ୍ଟ' ଗୃହୀତ ହୋଇ ସାରିଥାଏ । ଫଳରେ ସେଠାର ମହିଳାମାନେ ସୁବିଧା ସୁଯୋଗ ପାଇବାରେ ସକ୍ଷମ ହେଉଥାନ୍ତି । ସେହି ଆଇନ୍‌କୁ ଉଦାହରଣ ଭାବରେ ନେଇ ସୁଧାଂଶୁବାଳାଙ୍କ ଓକିଲ ତାଙ୍କୁ ଆଇନ୍ ସେବା ଲାଗି ସୁଯୋଗ ଦିଆଯାଉ ବୋଲି ଦାବି କରୁଥାନ୍ତି । ଏସବୁ ସତ୍ତ୍ୱେ ରାୟ ସୁଧାଂଶୁବାଳାଙ୍କ ସପକ୍ଷରେ ଗଲାନାହିଁ । ୧୯୨୧ ମସିହା ନଭେମ୍ବର ମାସ ୨୮ ତାରିଖରେ ପାଟନା ହାଇକୋର୍ଟର ପୂର୍ଣ୍ଣ ଖଣ୍ଡପୀଠ (ଫୁଲ୍ ବେଞ୍ଚ)ର ମାନ୍ୟବର ବିଚାରପତିମାନେ ଏ ସଂକ୍ରାନ୍ତରେ ତିନିଗୋଟି ଭିନ୍ନଭିନ୍ନ ରାୟ ପ୍ରଦାନ କଲେ । ଏହି ରାୟରେ କୁହାଯାଇଥିଲା ଯେ, ୧୮୬୮ ଓ ୧୮୯୭ ମସିହାରେ ପ୍ରଣୀତ 'ଜେନେରାଲ କ୍ଲଜେସ୍ ଆକ୍ଟ'ର ନିର୍ଦ୍ଦେଶ ଅନୁଯାୟୀ ଜଣେ ମହିଳା ଓକିଲାତି ପାଠ ପଢ଼ି ସେ ବିଷୟରେ କୃତବିଦ୍ୟ ହୋଇଥିଲେ ମଧ୍ୟ 'ଇଣ୍ଡିଆନ୍ ଲିଗାଲ ପ୍ରାକ୍ଟିସନର୍ସ ଆକ୍ଟ' ଅନୁସାରେ ତାଙ୍କୁ ଓକିଲାତି କରିବା ପାଇଁ କେବେହେଲେ ଅନୁମତି ଦିଆଯାଇ ପାରିବ ନାହିଁ ।

ତଥାପି ମଧୁସୂଦନ ନିରାଶ ହୋଇ ନ ଥିଲେ । ଏହାପରେ ପାଟ୍‌ନା ହାଇକୋର୍ଟର ରାୟ ବିରୁଦ୍ଧରେ ପ୍ରିଭି କାଉନ୍‌ସିଲ୍‌ରେ ଆବେଦନ କରିବା ଲାଗି ତାଙ୍କୁ ଅନୁମତି ଦିଆଯାଉ ବୋଲି ମାନ୍ୟବର ହାଇକୋର୍ଟଙ୍କୁ ଅନୁରୋଧ କଲେ । ମାତ୍ର ତାଙ୍କର ସେହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଦିଆଗଲା । ସେ ପ୍ରିଭି କାଉନ୍‌ସିଲର ଜୁଡ଼ିସିଆଲ କମିଟି ନିକଟରେ ଏହି ଘଟଣା ଉପସ୍ଥାପନ କଲେ । ବହୁ ତର୍କ ବିତର୍କ, ବାଦ ବିବାଦ ପରେ ଶେଷରେ ପାଟନା ହାଇକୋର୍ଟର ରାୟ ବିରୋଧରେ ପ୍ରିଭି କାଉନ୍‌ସିଲରେ ଅଭିଯୋଗ କରିବା ଲାଗି ତାଙ୍କୁ ଅନୁମତି ମିଳିଲା । ଅନୁମତି ମିଳିଗଲା ପରେ ମଧୁସୂଦନ ତୁରନ୍ତ 'ଇଣ୍ଡିଆ ହାଉସ୍'ର ସାର ଉଇଲିୟମ ଡିଉକଙ୍କୁ ପତ୍ର ଲେଖି

ଜଣେଇଲେ ଯେ, ଭାରତରେ ମହିଳାମାନଙ୍କୁ ଆଇନ୍ ବ୍ୟବସାୟରୁ ବଞ୍ଚିତ କରିବା ନେଇ ପାଟନା ହାଇକୋର୍ଟଙ୍କ ରାୟ ବିରୋଧରେ ବର୍ତ୍ତମାନ ପ୍ରିଭି କାଉନ୍‌ସିଲରେ ଯେଉଁ ଅପିଲ କରାଯାଇଛି ସେଥିରେ ଭାରତ ବିଭାଗ ସେକ୍ରେଟାରୀ ପକ୍ଷଭୁକ୍ତ ହେବା ସମୁଚିତ ନୁହେଁ । ଅବଶେଷରେ ପ୍ରିଭି କାଉନ୍‌ସିଲର ରାୟ ମଧୁସୂଦନଙ୍କ ସପକ୍ଷରେ ହିଁ ଯାଇଥିଲା । ସେତିକିରେ ମଧୁସୂଦନଙ୍କ ଉଦ୍ୟମ ଶେଷ ହୋଇ ନ ଥିଲା । ସେ ୧୮୭୯ ମସିହାର 'ଇଣ୍ଡିଆନ୍ ଲିଗାଲ ପ୍ରାକ୍‌ଟିସନର୍ସ ଆକ୍ଟ'କୁ ସଂଶୋଧନ କରିବା ଲାଗି ଉଦ୍ୟମ ଆରମ୍ଭ କଲେ ।

ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିକୁ ସଭ୍ୟ ନିର୍ବାଚନ କରିବା ନିମନ୍ତେ ଏହା ପୂର୍ବରୁ ମହିଳାମାନଙ୍କୁ ଅଧିକାର ଦିଆଯାଉ ନ ଥିଲା । ଏଥିନିମନ୍ତେ ଯେଉଁ ଆଇନ୍ ପ୍ରଣୀତ ହୋଇଥିଲା ତାହା ପରିବର୍ତ୍ତନ କରିବା ଲାଗି ୧୯୨୨ ମସିହା ଫେବୃଆରୀ ମାସ ୧ ତାରିଖରେ ସେଣ୍ଟ୍ରାଲ ଲେଜିସ୍‌ଲେଟିଭ୍ କାଉନ୍‌ସିଲରେ ଜଣେ ସଭ୍ୟ ଏକ ପ୍ରସ୍ତାବ ଆଗତ କଲେ । ଏହି ପ୍ରସ୍ତାବକୁ ସେଣ୍ଟ୍ରାଲ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ସଭ୍ୟ ଏଚ୍.ଏସ୍. ଗୋର ସମର୍ଥନ କରିବା ସହିତ 'ଇଣ୍ଡିଆନ୍ ଲିଗାଲ ପ୍ରାକ୍‌ଟିସନର୍ସ ଆକ୍ଟ'ର ସଂଶୋଧନ କରାଯାଇ ମହିଳାମାନଙ୍କୁ ଆଇନ୍ ବ୍ୟବସାୟ କରିବାର ସୁଯୋଗ ଦିଆଯାଉ ବୋଲି ଏକ ନୂତନ ପ୍ରସ୍ତାବ ମଧ ଆଗତ କରାଇଲେ । ସବୁଠୁ ଖୁସିର ବିଷୟ, ଏହି ଦୁଇଟି ପ୍ରସ୍ତାବ ସପକ୍ଷରେ ବିଧାନସଭାର ସଭ୍ୟମାନଙ୍କ ଠାରୁ ବିପୁଳ ସମର୍ଥନ ମିଳିପାରିଥିଲା । ପରିସ୍ଥିତି ଏମିତି ହେଲା ଯେ ଘରୋଇ ମନ୍ତ୍ରୀ ସାର୍ ଉଇଲିୟମ୍ ଭିନ୍‌ସେଣ୍ଟ ସଭ୍ୟମାନଙ୍କୁ ପ୍ରତିଶ୍ରୁତି ଦେବାକୁ ଯାଇ କହିଥିଲେ, ବିଭିନ୍ନ ହାଇକୋର୍ଟ ଓ ପ୍ରାଦେଶିକ ସରକାରମାନଙ୍କ ଠାରୁ ମତାମତ ମିଳିବା ପରେ ଏ ସଂକ୍ରାନ୍ତରେ ସରକାରଙ୍କ ପକ୍ଷରୁ ଗୋଟିଏ ବିଲ୍ ଆଗତ କରିବାକୁ ସେ ମନସ୍ଥ କରିଛନ୍ତି । ଆଉ ନିକଟ ଭବିଷ୍ୟତରେ ତାହା ଆଗତ ହେବ । ମାତ୍ର ଏହି ପ୍ରତିଶ୍ରୁତି ଉପରେ ମଧୁସୂଦନଙ୍କର ଭରସା ନ ଥିଲା କି ସେ ଏଭଳି ବାଚନିକ ପ୍ରତିଶ୍ରୁତିରେ ସନ୍ତୁଷ୍ଟ ହୋଇଯିବା ଭଳି ମଣିଷ ନ ଥିଲେ । ସେ ତତ୍କାଳୀନ ଭାଇସ୍‌ରାୟ ଲର୍ଡ ରିଡ଼ିଂଙ୍କୁ ଏ ବିଷୟରେ ଅବଗତ କରାଇଲେ ଏବଂ କ'ଣ ପାଇଁ 'ଇଣ୍ଡିଆନ୍ ଲିଗାଲ ପ୍ରାକ୍‌ଟିସନର୍ସ ଆକ୍ଟ'ର ସଂଶୋଧନ ଦରକାର ସେ ବିଷୟରେ ପ୍ରାଞ୍ଜଳ ଭାବରେ ବୁଝାଇଲେ । ଶେଷରେ ମଧୁସୂଦନଙ୍କ ଅଦମ୍ୟ ଉଦ୍ୟମ ଫଳରେ ୧୯୨୨ ମସିହା ଅଗଷ୍ଟ ୮ ତାରିଖରେ ସେଣ୍ଟ୍ରାଲ ଆସେମ୍ବ୍ଲିରେ ୧୮୭୯ ମସିହାର 'ଇଣ୍ଡିଆନ୍ ଲିଗାଲ ପ୍ରାକ୍‌ଟିସନର୍ସ ଆକ୍ଟ'ର ୧୮ ଧାରା ସଂଶୋଧିତ ହେଲା ଓ ଭାରତର

ମହିଳାମାନେ ଓକିଲାତି କରିବାର ସୁଯୋଗ ପାଇଲେ । ପାଟନା ହାଇକୋର୍ଟରେ ଆଇନ୍ ବ୍ୟବସାୟ ଆରମ୍ଭ କରି ସୁଧାଂଶୁବାଳା ହାଜରା ଭାରତର ପ୍ରଥମ ମହିଳା ଓକିଲ ହେବାର ସୌଭାଗ୍ୟ ଅର୍ଜନ କଲେ ।

## ଯୁବପ୍ରିୟ ଓ ଛାତ୍ରବତ୍ସଳ

ମଧୁସୂଦନ ଦୁଇଗୋଟି କଥା ଉପରେ ସବୁବେଳେ ଆସ୍ଥା ରଖୁଥିଲେ । ସେ କହୁଥିଲେ ଯଦି ଦେଶ ବା ରାଜ୍ୟର ଯୁବଶକ୍ତି ଜାଗ୍ରତ ହେବ ତା'ହେଲେ କୌଣସି କାର୍ଯ୍ୟ ଅସମ୍ଭବ ହୋଇ ରହିବ ନାହିଁ । ମାତ୍ର ଯୁବକମାନେ ବାସ୍ତବତାର ମାର୍ଗ ଛାଡ଼ି କଳ୍ପନାର ରାସ୍ତାରେ ବାଟ ଚାଲନ୍ତୁ, ଏହା ସେ କେବେ ବି ପସନ୍ଦ କରୁ ନ ଥିଲେ । ସେହିଭଳି ଛାତ୍ରମାନଙ୍କ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ସେ ଛାତ୍ରସମାଜ ମଧ୍ୟରେ ଏକ ସମୃଦ୍ଧ ତଥା ନୀତିନିଷ୍ଠ, ମୂଲ୍ୟବୋଧଭିତ୍ତିକ ସମାଜଗଠନର ଉତ୍ତରାଧିକାରୀମାନଙ୍କୁ ଦେଖି ପାରୁଥିଲେ । ସେଥିଲାଗି ସେ ଛାତ୍ରମାନଙ୍କୁ ଖୁବ୍ ଭଲ ପାଉଥିଲେ ।

୧୯୧୨ ମସିହାର କଥା । କୁଳବୃଦ୍ଧ ମଧୁସୂଦନଙ୍କୁ ଜଣେ ଯୁବ ସାହିତ୍ୟିକ ସ୍ୱଲିଖିତ ଏକ ପୁସ୍ତକ ଉପହାର ପ୍ରଦାନ କରିଥିଲେ ଏବଂ ସାହିତ୍ୟ ସମ୍ପର୍କିତ ଆଲୋଚନା ଆରମ୍ଭ କରିଥିଲେ । ଯୁବ ସାହିତ୍ୟିକ ଜଣକ ଭାବିଥିଲେ ସମ୍ଭବତଃ ମଧୁସୂଦନ ତାଙ୍କୁ ପ୍ରଶଂସାରେ ପୋତି ପକେଇବେ । ମାତ୍ର ବାସ୍ତବତାର ରାସ୍ତାରେ ପାଦଥାପି ସାରାଜୀବନ ଅତିବାହିତ କରି ଆସିଥିବା ମଧୁସୂଦନ କହିଥିଲେ- 'ସାହିତ୍ୟରେ ଜାତି ବଞ୍ଚିବ ନାହିଁ । ଜାତିକୁ ବଞ୍ଚିବାକୁ ହେଲେ କଳ୍ପନା ଯଥେଷ୍ଟ ନୁହେଁ । ରୁଟି ଦରକାର, ଭାତ ଦରକାର । ତମ ସାହିତ୍ୟ କ'ଣ ତାହା ଦେଇ ପାରିବ ? ତମର ଏହି ବହିକୁ ଜଣେ ବଣିଆକୁ ଦିଅ, ସେ କ'ଣ କରିବ ଜାଣ ? ସେ କ'ଣ ଏ ବହିରୁ କବିତା ପଢ଼ିବ ଭାବିଛ ? ସେ ଏହାର ପତ୍ର ଚିରି ଗ୍ରାହକମାନଙ୍କୁ ଜିନିଷ ଗୁଡ଼େଇ ବିକ୍ରି କରିବ । ତମେ କ'ଣ ରାଗିଲ ? ସମସ୍ତଙ୍କୁ ଚିଡ଼େଇବା ମୋର ଅଭ୍ୟାସ । ଇଂଲଣ୍ଡରେ ଯେତେବେଳେ ସେକ୍ସପିୟର, ଶେଲୀ ପ୍ରଭୃତି ବଡ଼ବଡ଼ କବି ଥିଲେ, ସେତେବେଳେ ଇଂଲଣ୍ଡର ଉନ୍ନତି ହୋଇ ନ ଥିଲା । ଉନ୍ନତି ହେଲା ବହୁ ପରେ । ସାହିତ୍ୟ ବା ଖାଣ୍ଟି କଳ୍ପନା ଦେଶକୁ ଉଠାଇ ପାରିବ ନାହିଁ । କବି ଯଦି ନଡ଼ିଆ ଗଛକୁ

ଦେଖେ, କ'ଣ କରେ ? କବିତା ତିଆରି କରେ; କିନ୍ତୁ ବ୍ୟବସାୟୀ ଦେଖିଲେ ଭାବେ ଯେ, ସେ କିପରି ସେଥିରୁ କତା କାଢ଼ିବ, କିପରି ଜାଲେଣି ତିଆରି କରି ବଜାରରେ ବିକି ଦୁଇ ପଇସା ରୋଜଗାର କରିବ । ସେଇ ଏକା ଜିତେ ।'

ମଧୁସୂଦନ ଯେ ସାହିତ୍ୟ ପ୍ରତି ବିମୁଖ ସେକଥା ତାଙ୍କର ଏଭଳି ମନ୍ତବ୍ୟରୁ ଭାବିନେବା ଠିକ୍ ନୁହେଁ । ମାତ୍ର ଯୁବକମାନେ କଳ୍ପନା ବିଳାସୀ ହୁଅନ୍ତୁ ଏକଥା ସେ କେବେ ବି ଚାହୁଁ ନ ଥିଲେ । ସେ ଚାହୁଁଥିଲେ ଯୁବକମାନେ କଳ୍ପନା ପ୍ରବଣ ହେବା ପରିବର୍ତ୍ତେ ସମାଜ, ଅର୍ଥନୀତି ଓ ରାଷ୍ଟ୍ରନୀତି ବିଷୟରେ ଚିନ୍ତା କରନ୍ତୁ ଏବଂ ସେହି ସମସ୍ୟା ସବୁର ସମାଧାନ ପାଇଁ ଚେଷ୍ଟା କରନ୍ତୁ । ଖାସ୍ ସେଇଥିପାଇଁ ସେ ସେହି ଯୁବ ସାହିତ୍ୟିକଙ୍କୁ ଏଭଳି କଥା ଶୁଣାଇଥିଲେ ।

ସାହିତ୍ୟ, ସାହିତ୍ୟିକ ଓ ଜାତିକୁ ନେଇ ମଧୁସୂଦନଙ୍କ ଭିତରେ ବେଶ୍ କୌତୂହଳ ଥିଲା । ୧୯୧୨ ମସିହାରେ ତାଙ୍କର ଏକ 'ଉତ୍କଳ ସମ୍ମିଳନୀ' ବାର୍ତ୍ତାରେ ସେ କହିଥିଲେ- ମିଲ୍‌ଟନ ଶେଷକାଳକୁ ଅନାହାରରେ ପ୍ରାଣତ୍ୟାଗ କଲେ । ସେକ୍ସପିଅର ଥିଏଟର ଯାତ୍ରୀଙ୍କ ଯୋତା ସଫା କରି ପେଟ ପୋଷୁଥିଲେ । ସେତେବେଳେ ସେହି ଜାତି ସେମାନଙ୍କୁ ମୁଣ୍ଡରେ ବସାଉ ନ ଥିଲା । ମାତ୍ର ବର୍ତ୍ତମାନ ବିଲାତର ଲୋକେ କହୁଛନ୍ତି ଆମର ମିଲ୍‌ଟନ୍, ଆମର ସେକ୍ସପିଅର । ଏହା ହେଉଛି ଜାତିର ଏକ ବିଚିତ୍ର ଲକ୍ଷଣ !

ମଧୁସୂଦନଙ୍କ ମଧ୍ୟରେ ସାହିତ୍ୟ ପ୍ରୀତି କିଛି କମ୍ ନ ଥିଲା । ସେ ଓଡ଼ିଆ ଭାଷା ସାହିତ୍ୟକୁ ପ୍ରାଣଠୁ ବଳି ଶ୍ରଦ୍ଧା କରୁଥିଲେ । ଏମିତିକି ପ୍ରାଚୀନ ଓଡ଼ିଆ ସାହିତ୍ୟର ଉଦ୍ଧାର ଲାଗି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରଚେଷ୍ଟାରେ 'ପ୍ରାଚୀ ସମିତି' ନାମରେ ଏକ ସାହିତ୍ୟ ସମିତି ଗଠନ କରିଥିଲେ ।

ସେହିଭଳି ଛାତ୍ରମାନଙ୍କର ସେ ଯେତିକି ପ୍ରିୟ ଥିଲେ, ଛାତ୍ରମାନଙ୍କୁ ସେ ସେତିକି ଭଲ ପାଉଥିଲେ । ଛାତ୍ରମାନଙ୍କୁ ନିଜ ଘରକୁ ଡାକି ନାନାଦି ଉପଦେଶମାନ ପ୍ରଦାନ କରୁଥିଲେ । କେତେବେଳେ ଉପଦେଶ ଛଳରେ ସେମାନଙ୍କୁ ମୃଦୁ ଭର୍ତ୍ସନା କରି ସେମାନଙ୍କର ଇଚ୍ଛା ଶକ୍ତି ବଢ଼ାଇ ଦେଉଥିଲେ ତ ପୁଣି କେତେବେଳେ ସେମାନଙ୍କୁ ନିଜ ଘରେ ଖାଇବାକୁ ଦେଇ ଆନନ୍ଦ ଅନୁଭବ କରୁଥିଲେ । ଛାତ୍ରମାନଙ୍କ ସହିତ ସେ ଯେମିତି ଥଟ୍ଟା ମଜା କରୁଥିଲେ, ଛାତ୍ରମାନେ ବି ତାଙ୍କ ସହିତ ସେମିତି ଖୁସି ଗପ କରି ବେଶ୍ ମଜା ଉଠାଉଥିଲେ ।

## ଜାତିପ୍ରାଣ ମଧୁସୂଦନ

ଦିନକର କଥା- କଟକର ରେଭେନ୍‌ସା କଲେଜର କେତେଜଣ ଛାତ୍ରଙ୍କୁ ସେ ନିଜ ଘରକୁ ନିମନ୍ତ୍ରଣ କଲେ । ସେମାନଙ୍କୁ ଡାକି ପଚାରିଲେ, ତୁମେମାନେ କ'ଣ ଖାଇବ ? ଏ ବିଷୟରେ ଛାତ୍ରମାନେ ନିର୍ଦ୍ଦିଷ୍ଟ ନିର୍ଣ୍ଣୟ ନେଇ ପାରିଲେ ନାହିଁ । କିଏ କହିଲା ମାଂସ ଖାଇବ ତ କିଏ କହିଲା ମାଛ ଖାଇବ । ଆଉ କେହିକେହି କହିଲେ ନିରାମିଷ, ମିଠା ଖାଇବେ । ମଧୁସୂଦନ ଏହା ଶୁଣି କହିଲେ- ତୁମେମାନେ ତ ନିଜର ଖାଇବା ବିଷୟରେ ଏକମତ ହୋଇ ପାରୁନାହଁ, ଏଥିରେ ନିଜ ନିଜ ମଧ୍ୟରେ ଏକତା ଆଣିବ କେମିତି ? ହଉ, ମୁଁ ତୁମମାନଙ୍କୁ ଦିନେ ମାଂସ ଓ ଅନ୍ୟଦିନେ ନିରାମିଷ ଖାଇବାକୁ ଦେବି ।

ଛାତ୍ରମାନେ ପ୍ରଥମ ଦିନ ମାଂସ ଖାଇଲେ ଓ ଅନ୍ୟ ଏକ ଦିନ ନିରାମିଷ ଖାଇଲେ । ନିରାମିଷ ଖାଉଥିବା ବେଳେ ଜଣେ ଛାତ୍ର କୌତୁକ କରି କହିଲା- ଆଜ୍ଞା, ଏ ପୋଖରୀ ଆଡୁ ଭାରି ଶବ୍ଦ ଆସୁଛି । ଲାଗୁଛି ଯେପରି ମାଛଗୁଡ଼ା ପରସ୍ପର ମଧ୍ୟରେ ମତଭେଦ ଯୋଗୁ ବାଡ଼ିଆ ପିଟା ଲାଗୁଛନ୍ତି ! ଛାତ୍ରଟିର କୌତୁକ ବୁଝିବା ପାଇଁ ମଧୁସୂଦନଙ୍କୁ ବେଶି ସମୟ ଲାଗିଲା ନାହିଁ । ସେ କହିଲେ- ତୁମର ଫନ୍ଦି ମୁଁ ଠିକ୍ ବୁଝି ପାରିଛି । ଠିକ୍ ଅଛି, ଆସନ୍ତାକାଲି ମାଛମାନଙ୍କ ମଧ୍ୟରେ ଏକତା ସ୍ଥାପନ କରିବା ସକାଶେ ମୁଁ ତୁମମାନଙ୍କୁ ନିମନ୍ତ୍ରଣ କରୁଛି ।

ସତକୁସତ ତୃତୀୟ ଦିନରେ ମଧୁସୂଦନ ଛାତ୍ରମାନଙ୍କୁ ମାଛ ତରକାରୀ କରି ଖାଇବାକୁ ଦେଇଥିଲେ ।

## ଟ୍ୟାନେରୀ ନିଲାମ

ବିହାର-ଓଡ଼ିଶା ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ମଧୁସୂଦନ ତାଙ୍କର ପ୍ରିୟ କଟକକୁ ଫେରି ଆସିଲେ । ମାତ୍ର କଟକରେ ପହଞ୍ଚି 'ଉତ୍କଳ ଟ୍ୟାନେରୀ'କୁ ବୁଡ଼ିଯିବା ଅବସ୍ଥାରେ ଦେଖି ବିସ୍ମିତ ହୋଇଗଲେ । କାରଣ 'ଉତ୍କଳ ଟ୍ୟାନେରୀ' ବୁଡ଼ିଯିବା ପରିସ୍ଥିତିକୁ ଆସି ଯାଇଥିଲା । ଟ୍ୟାନେରୀର ଏଭଳି ଦୁର୍ଦ୍ଦଶା କ'ଣ ପାଇଁ ତାଙ୍କର ଆଉ ବୁଝିବାକୁ ବାକି ରହିଲା ନାହିଁ । ନିଜର ବ୍ୟକ୍ତିଗତ ଅବହେଳା ତଥା ପରିଚାଳକମାନଙ୍କର ତ୍ରୁଟିପୂର୍ଣ୍ଣ ପରିଚାଳନା ଯୋଗୁଁ ଟ୍ୟାନେରୀ ଧ୍ୱଂସ ହୋଇଯିବାକୁ ବସିଥିଲା । ହେଲେ ତାଙ୍କ ହାତରେ ଆଉ କିଛି ଉପାୟ ନ ଥିଲା । ସେତେବେଳକୁ ସେ ପରିଣତ ବୟସରେ ପହଞ୍ଚିଥିଲେ ।

ତାଙ୍କୁ ୭୫ ବର୍ଷ ହୋଇ ସାରିଥିଲା । ପୁଣି ଜନସେବା ପାଇଁ ଅପର୍ଯ୍ୟାପ୍ତ ଋଣ କରି ଦେବାଳିଆ ହୋଇ ଯାଇଥିଲେ । ତାଙ୍କର କୌଣସି ବିଧିବଦ୍ଧ ରୋଜଗାର ପନ୍ଥା ନ ଥିଲା । ପ୍ରଥମତଃ, ବିହାର-ଓଡ଼ିଶା ମନ୍ତ୍ରୀ ହେବା କାରଣରୁ ସେ ଓକିଲାତି କରିପାରୁ ନ ଥିଲେ । ତେଣୁ ସେ ବାବଦରେ ତାଙ୍କର ରୋଜଗାର ବନ୍ଦ ହୋଇ ଯାଇଥିଲା । ପୁଣି ମନ୍ତ୍ରୀପଦକୁ ଅବୈତନିକ କରିବା ଜିଦ୍‌ରେ ଅଟଳ ରହିବା କାରଣରୁ ମନ୍ତ୍ରୀ ବାବଦରେ ମାସକୁମାସ ତାଙ୍କୁ ମିଳିବାକୁ ଥିବା ୫ ହଜାର ଟଙ୍କା ସେ ତ୍ୟାଗ କରିଥିଲେ । ଗୋଟିଏ ମହାନ ଅନୁଷ୍ଠାନ– ଯାହାକୁ ସେ ନିଜ ହାତରେ ତିଆରି କରିଥିଲେ, ତାହା ତାଙ୍କ ନିଜ ଆଖି ଆଗରେ ଧ୍ୱଂସ ହୋଇ ଯାଉଥିଲା; ଏହା ନିରୁପାୟ ଭାବରେ ଦେଖିବା ବ୍ୟତୀତ ତାଙ୍କ ଆଗରେ ଆଉ କିଛି ବିକଳ୍ପ ନ ଥିଲା । ତଥାପି ମଧୁସୂଦନ ଆଶା ହରାଇ ନ ଥିଲେ ।

୧୯୨୦ ମସିହାରେ ମଧୁସୂଦନଙ୍କର ମହାତ୍ମା ଗାନ୍ଧୀଙ୍କ ସହିତ ସଳ୍ପକାଳ ପାଇଁ ସାକ୍ଷାତ ହୋଇଥିଲା । ପୁଣି ମଧୁସୂଦନଙ୍କର ଦୂରଦର୍ଶିତା ତଥା କାର୍ଯ୍ୟାବଳୀ ଗାନ୍ଧୀଜୀଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ବିଶେଷକରି ବିହାର-ଓଡ଼ିଶା ଲେଜିସ୍‌ଲେଟିଭ କାଉନସିଲରେ ମନ୍ତ୍ରୀପଦକୁ ଅବୈତନିକ କରିବା ନିମନ୍ତେ ସେ ଯେଉଁ ଦାବି କରିଥିଲେ ଏବଂ ତାହାକୁ କେନ୍ଦ୍ର କରି ନିଜେ ମନ୍ତ୍ରୀପଦରୁ ଇସ୍ତଫା ଦେଇଥିଲେ, ତାହା ଗାନ୍ଧୀଜୀଙ୍କୁ ମଧୁସୂଦନଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ କରି ପାରିଥିଲା । ୧୯୨୪ ମସିହା ଫେବୃଆରୀ ମାସ ୪ ତାରିଖରେ ମଧୁସୂଦନ ସାବରମତି ଆଶ୍ରମ ଯାଇ ସେଠାରେ ଗାନ୍ଧୀଜୀଙ୍କୁ ସାକ୍ଷାତ କଲେ । ଏହି ଅବସରରେ ସେ ମହାତ୍ମା ଗାନ୍ଧୀଙ୍କୁ ଗ୍ରାମ୍ୟ ତଥା ହରିଜନ ଉନ୍ନୟନର ବିଭିନ୍ନ ଦିଗ ବିଷୟରେ ମାର୍ଗଦର୍ଶନ ଦେବା ସହିତ ଚମଡ଼ା ଓ ଅନ୍ୟାନ୍ୟ ଗ୍ରାମ୍ୟ ଶିଳ୍ପ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ କଟକ ଆସି 'ଉତ୍କଳ ଟ୍ୟାନେରୀ' ପରିଦର୍ଶନ କରିବାକୁ ଆମନ୍ତ୍ରଣ ଜଣାଇଲେ । ମହାତ୍ମାଙ୍କୁ 'ଉତ୍କଳ ଟ୍ୟାନେରୀ' ପରିଦର୍ଶନ ନିମନ୍ତେ ଆମନ୍ତ୍ରଣ କରିବା ପଛରେ ମଧୁସୂଦନଙ୍କର ଆଉ ଏକ ଉଦ୍ଦେଶ୍ୟ ରହିଥିଲା- ତାହା ହେଉଛି 'ଉତ୍କଳ ଟ୍ୟାନେରୀ'ର ପୁନରୁଦ୍ଧାର । ମାତ୍ର ଗାନ୍ଧୀଜୀ ତାଙ୍କର ବ୍ୟସ୍ତତାମୟ ଜୀବନର କାର୍ଯ୍ୟକ୍ରମକୁ କାଟଛାଣ୍ଟ କରି କଟକ ଆସିବା ପାଇଁ ତୁରନ୍ତ ସମୟ ପାଇଲେ ନାହିଁ । ତେବେ ଏହାର କିଛି ଦିନ ପରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କର ଦେହାନ୍ତ ଘଟିବା ଯୋଗୁଁ ସେ କଲିକତା ଆସିଲେ ଏବଂ ସେହି ଅବକାଶରେ କଟକ ଆସିବା ପାଇଁ ମନ ବଳାଇଲେ । ମଧୁସୂଦନଙ୍କୁ ଏ

ସମ୍ପର୍କରେ ଏକ ଟେଲିଗ୍ରାମ ଦ୍ୱାରା ଜଣାଇ ଦେଲେ । ମଧୁସୂଦନ ତୁରନ୍ତ ଟେଲିଗ୍ରାମର ଉତ୍ତର ଦେଇ ତାଙ୍କୁ କଟକ ଆସିବା ଲାଗି ପୁଣି ଥରେ ଆମନ୍ତ୍ରଣ ଜଣାଇଲେ । ତେବେ କଟକ ଆସିବା ପୂର୍ବରୁ ମହାତ୍ମା ଗାନ୍ଧୀ ମଧୁସୂଦନଙ୍କୁ ୧୯୨୫ ମସିହା ଅଗଷ୍ଟମାସ ୧୨ ତାରିଖରେ ଏକ ପତ୍ର ଲେଖିଲେ—

୧୪୮ ରସାରୋଡ୍, କଲିକତା
୧୨.୮.୧୯୨୫

ପ୍ରିୟ ବନ୍ଧୁ,

ମୋର ତାରବାର୍ତ୍ତାର ତୁରନ୍ତ ଉତ୍ତର ଆପଣଙ୍କ ଠାରୁ ପାଇଲି । ମୁଁ ଆପଣଙ୍କୁ ହିଁ ଅନବରତ ଭାବି ଚାଲିଛି । ମୁଁ ଜାମସେଦପୁରରେ ପହଞ୍ଚିଲା ପର୍ଯ୍ୟନ୍ତ କଟକ ଯାଇ ଆପଣଙ୍କ ଉଦ୍ୟୋଗକୁ ଦେଖି ପାରିବି ବୋଲି ଚିନ୍ତା କରି ପାରି ନ ଥିଲି । ଜାମସେଦପୁରରେ ପହଞ୍ଚିଲା ପରେ ମୋର ବିବେକ ମୋତେ ବାରମ୍ବାର ଦଂଶନ କଲା ଆଉ ଚେତେଇ ଦେଲା ଯେ, ମୁଁ ଯେପରି କଟକ ଯାଇ ଆପଣଙ୍କ ଟ୍ୟାନେରୀ ପରିଦର୍ଶନ କରେ । ମୁଁ ଏଠାରୁ ମଙ୍ଗଳବାର ଦିନ ପୁରୀ ଏକ୍ସପ୍ରେସ୍‌ରେ ବାହାରିବି । ତାହା, ମୁଁ ଯେପରି ବୁଝିଛି, କଟକରେ ପାହାନ୍ତିଆ ୪ଟାରେ ପହଞ୍ଚିବ । ମୁଁ ସେଠାରେ ମାତ୍ର ଦୁଇଦିନ ରହିବି । ମୁଁ ଜାଣେ, ଆପଣ ମୋର ପରିଦର୍ଶନକୁ ଗୁପ୍ତ ରଖି ପାରିବେ ନାହିଁ । ମାତ୍ର ମୁଁ ଆପଣଙ୍କ ଉପରେ ଗୋଟିଏ ଭାରି କାର୍ଯ୍ୟକ୍ରମ ଲଦି ଦେବାକୁ ଚାହେଁ ନାହିଁ । ମୁଁ ଚାହେଁ, ଟ୍ୟାନେରୀ ସମ୍ପର୍କରେ ତଥା ଆପଣଙ୍କର ଆବଶ୍ୟକତା ଉପରେ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରିବି ଏବଂ ଆପଣଙ୍କୁ ସାହାଯ୍ୟ ଦେଇ ପାରିବି କି ନାହିଁ ସେ ସମ୍ପର୍କରେ ଚିନ୍ତା କରିବି ।

ମୁଁ ଆପଣଙ୍କ ପାଖେ ହିଁ ଆଗ୍ରହର ସହ ରହିବି, ମାତ୍ର ମୋ ସାଥିରେ ରଙ୍ଗଲାଲ ଓ ସତୀଶ ଚନ୍ଦ୍ର ଦାସଗୁପ୍ତ ଆସୁଛନ୍ତି । ପ୍ରଥମ ବ୍ୟକ୍ତି ଜଣେ ମାରୁଆଡ଼ି ଭଦ୍ରବ୍ୟକ୍ତି, ଯାହାଙ୍କୁ ମୁଁ ଗୋରକ୍ଷା ସମ୍ପର୍କରେ ଅନୁପ୍ରେରିତ କରୁଛି । ଦ୍ୱିତୀୟ ବ୍ୟକ୍ତିଙ୍କୁ ଆପଣ ଜାଣନ୍ତି ଆଉ ତୃତୀୟ ବ୍ୟକ୍ତି ହେଉଛନ୍ତି ମହାଦେବ ଦେଶାଇ, ଯାହାଙ୍କୁ ଆପଣ ମଧ ଜାଣନ୍ତି । ବର୍ତ୍ତମାନ ଆପଣ ମୋତେ ଯେଉଁଠାରେ ରଖି ପାରନ୍ତି । ମୁଁ ସେଠାର ବଙ୍ଗାଳୀ ବନ୍ଧୁମାନଙ୍କ ଠାରୁ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ସ୍ମୃତି ପାଇଁ କିଛି ଅର୍ଥ ସଂଗ୍ରହ କରିବାକୁ ଚାହେଁ । ହଁ, ଆପଣ ମୋତେ ଉତ୍କଳରେ କିପରି ଚରଖାର ବାର୍ତ୍ତା ପ୍ରଚାର

କରାଯିବ, ସେ ସମ୍ପର୍କରେ ଶିକ୍ଷା ଦେବେ । ଯଦିଓ କଂଗ୍ରେସ ସେଠାରେ ଏ ଦିଗରେ ପାଣି ଭଳି ଅର୍ଥ ବ୍ୟୟ କରିଛି, ମାତ୍ର ପ୍ରକୃତରେ କିଛି ଅଗ୍ରଗତି ହୋଇନାହିଁ । ଅବଶ୍ୟ ଏଥିଲାଗି ମୁଁ ବ୍ୟଥିତ ନୁହେଁ ।

ଆପଣଙ୍କର ଅନ୍ତରଙ୍ଗ
ଏମ୍.କେ.ଗାନ୍ଧୀ

ମହାତ୍ମା ଗାନ୍ଧୀ ଏହାର ସାତଦିନ ପରେ ଅର୍ଥାତ ୧୯୨୫ ମସିହା ଅଗଷ୍ଟ ମାସ ୧୯ ତାରିଖ ଦିନ କଟକରେ ପହଞ୍ଚି ମଧୁସୂଦନଙ୍କ ଅତିଥି ହୋଇଥିଲେ । ଏହି ଅବସରରେ ସେ 'ଉତ୍କଳ ଟ୍ୟାନେରୀ' ଓ ତାହାର କାର୍ଯ୍ୟକଳାପ ଦେଖି ଖାଲି ଅଭିଭୂତ ହୋଇ ନ ଥିଲେ; ଅଧିକନ୍ତୁ ଜାତୀୟ କଂଗ୍ରେସର ରଚନାତ୍ମକ କାର୍ଯ୍ୟକ୍ରମରେ ଟ୍ୟାନେରୀର କାର୍ଯ୍ୟଧାରାକୁ ସାମିଲ କରିଦେଲେ ।

ତେବେ ଟ୍ୟାନେରୀର ଦୁର୍ଦ୍ଦଶା ତାଙ୍କୁ ଅତି ମାତ୍ରାରେ ବ୍ୟଥିତ କରିଥିଲା । ସେ 'ଉତ୍କଳ ଟ୍ୟାନେରୀ'କୁ ରଙ୍ଗଲାଲ ମାରୁଆଡ଼ିକୁ ବିକ୍ରି କରିଦେବା ପାଇଁ ମଧୁସୂଦନଙ୍କୁ ପରାମର୍ଶ ଦେଇଥିଲେ । ଏ ସମ୍ପର୍କରେ ଗାନ୍ଧୀଜୀ ବୁଝେଇ କହିଥିଲେ ଯେ, ରଙ୍ଗଲାଲ ଟ୍ୟାନେରୀକୁ ଭଲ ଭାବରେ ଚଳାଇ ପାରିବ । ଫଳରେ ଟ୍ୟାନେରୀ ଧ୍ୱଂସମୁଖରୁ ରକ୍ଷା ପାଇଯିବ । ପୁଣି ଏହାଦ୍ୱାରା ଓଡ଼ିଶାରେ ଗୋ-ରକ୍ଷା ଯୋଜନା ମଧ କାର୍ଯ୍ୟକାରୀ ହୋଇ ପାରିବ । କିନ୍ତୁ ଗାନ୍ଧିଜୀଙ୍କର ଏହି ପ୍ରସ୍ତାବକୁ ମଧୁସୂଦନଙ୍କ ସାଭିମାନୀ ମନ ମାନି ନେଇ ପାରିଲା ନାହିଁ । ଉତ୍କଳର ଏଭଳି ଏକ ଗୌରବମୟ ଅନୁଷ୍ଠାନକୁ ଅନ୍ୟ ରାଜ୍ୟର ଜଣେ ବ୍ୟକ୍ତି ନିକଟରେ ବିକ୍ରି କରିଦେବାକୁ ସେ ଅସମ୍ମାନଜନକ ବୋଲି ଜ୍ଞାନ କରୁଥିଲେ । ଓଡ଼ିଶାର ଲୋକମାନେ ଏହାର ପରିଚାଳନା ଭାର ଗ୍ରହଣ କରନ୍ତୁ ଏହା ତାଙ୍କ ମନ ଭିତରେ ଥିଲା । ତେଣୁ ସେ ଉତ୍କଳ ଟ୍ୟାନେରୀକୁ ଏକ ଲିମିଟେଡ଼ କମ୍ପାନୀରେ ପରିଣତ କରିଦେଲେ ଏବଂ କମ୍ପାନୀର ସେୟାର (ଅଂଶ) କିଣିବା ପାଇଁ ଆହ୍ୱାନ କଲେ । ତାଙ୍କ ଆହ୍ୱାନରେ ବଙ୍ଗଳା, ବିହାର ଓ ଓଡ଼ିଶାର ଅନେକ ମହତ୍ତ୍ୱାକାଙ୍କ୍ଷୀ ବ୍ୟକ୍ତି କମ୍ପାନୀର ଅଂଶଧନ କିଣିଲେ ସତ; ମାତ୍ର ତାହା 'ଉତ୍କଳ ଟ୍ୟାନେରୀ'ର ପୁନରୁଦ୍ଧାରରେ ସହାୟକ ହୋଇ ପାରିଲା ନାହିଁ । ଏହି ସମୟରେ ଗୋଟିଏ ବ୍ରିଟିଶ କମ୍ପାନୀ ଟ୍ୟାନେରୀକୁ କିଣି ନେବା ପାଇଁ ମଧୁସୂଦନଙ୍କୁ ପ୍ରସ୍ତାବ ଦେଲା । ମାତ୍ର ମଧୁସୂଦନ ସେଥିରେ ବି ରାଜି ହେଲେ ନାହିଁ । ତାଙ୍କର କେବଳ ଗୋଟିଏ ମାତ୍ର ଲକ୍ଷ୍ୟ ଥିଲା—କମ୍ପାନୀ ଓଡ଼ିଶାରେ ରହୁ ଓ ଓଡ଼ିଶାବାସୀଙ୍କ ସେବାରେ ଲାଗୁ ।

ମାତ୍ର ଦୁର୍ଭାଗ୍ୟ ଯେତେବେଳେ ଆସେ ସେତେବେଳେ ସବୁଟୁମ୍ଭ ଆସେ । ମଧୁସୂଦନଙ୍କ କ୍ଷେତ୍ରରେ ମଧ ଠିକ୍ ସେଇଆ ହେଲା । ଏତିକିବେଳେ ସେ ଆଉ ଏକ ଭୟଙ୍କର ଚକ୍ରବ୍ୟୂହ ଭିତରକୁ ଠେଲି ହୋଇଗଲେ । ପୂର୍ବରୁ ଯେଉଁମାନଙ୍କଠାରୁ ମଧୁସୂଦନ ଋଣ କରିଥିଲେ ସେମାନେ ଏକ ସଙ୍ଗରେ ସମସ୍ତେ ତାଙ୍କ ବିରୋଧରେ ଛିଡ଼ା ହେଲେ ଏବଂ ତାଙ୍କ ନାମରେ ଅଦାଲତରେ ମକଦ୍ଦମା ଦାଏର କଲେ । ମଧୁସୂଦନ ଚିନ୍ତା କଲେ ଏ ଚକ୍ରବ୍ୟୂହରୁ ମୁକୁଳିବା ପାଇଁ ତାଙ୍କ ନିକଟରେ ଆଉ କିଛି ବାଟ ନାହିଁ । ଯଦି ଅଦାଲତ ତାଙ୍କୁ ଦେବାଳିଆ ବୋଲି ସ୍ୱୀକୃତି ଦିଅନ୍ତି ତା'ହେଲେ ହୁଏତ ସେ ଏ ଋଣଯନ୍ତାରୁ ମୁକ୍ତ ହୋଇ ପାରିବେ । ଏହା ଭାବି ସେ ୧୯୨୭ ମସିହା ମାର୍ଚ୍ଚ ମାସ ୨୧ ତାରିଖରେ ତାଙ୍କୁ ଦେବାଳିଆ (Insolvent) ଘୋଷଣା କରିବା ଲାଗି ମାନ୍ୟବର ଅଦାଲତଙ୍କ ନିକଟରେ ଆବେଦନ କଲେ ।ଏଥିରେ ମଧୁସୂଦନ ଉଲ୍ଲେଖ କରିଥିଲେ- 'ଦରଖାସ୍ତକାରୀ ବହୁ ପ୍ରକାର କ୍ଷତିଗ୍ରସ୍ତ ହେବା ଫଳରେ ଆନୁମାନିକ ୧,୮୦,୦୦୦ ଟଙ୍କା ଋଣ କରି ତାହାକୁ ପରିଶୋଧ କରି ପାରିନାହିଁ ।'

ଶେଷରେ ୧୯୨୭ ମସିହା ଅଗଷ୍ଟ ମାସ ୪ ତାରିଖରେ ଅଦାଲତ ମଧୁସୂଦନଙ୍କୁ ଦେବାଳିଆ ଘୋଷଣା କଲେ ଓ ତାଙ୍କର ସମସ୍ତ ସମ୍ପତ୍ତି ନିଲାମ କରିଦେବା ଲାଗି ନିର୍ଦ୍ଦେଶ ଦେଲେ । ବାସ୍, ଉତ୍କଳ ଟ୍ୟାନେରୀ ସମେତ ତାଙ୍କର ବାସଗୃହ, ଆସବାବପତ୍ର ଏବଂ ତାଙ୍କର ଅତିପ୍ରିୟ ଲ'- ଲାଇବ୍ରେରୀଟି ନିଲାମ ହୋଇଗଲା । ଶୁଣାଯାଏ 'ଉତ୍କଳ ଟ୍ୟାନେରୀ' ନିଲାମ ହୋଇ ଯିବା ବେଳେ ମଧୁସୂଦନ କିଛି ସମୟ ପାଇଁ ବେହୋସ ହୋଇ ଯାଇଥିଲେ । ଜାତି ପାଇଁ ଅହୋରାତ୍ର ସଂଗ୍ରାମ କରୁଥିବା ବ୍ୟକ୍ତି ଜଣକ ଶେଷରେ ଦାଣ୍ଡର ଭିକାରୀ ପାଲଟିଗଲେ । ଅବଶ୍ୟ ୧୯୩୧ ମସିହା ଜାନୁଆରୀ ୧ ତାରିଖରେ ମଧୁସୂଦନ ଦେବାଳିଆରୁ ଛାଡ଼ ପାଇଲେ ଏବଂ ହାଇକୋର୍ଟରେ ଓକିଲାତି କରିବା ପାଇଁ ତାଙ୍କୁ ସୁଯୋଗ ମିଳିଲା ।

ଶେଷ ପର୍ଯ୍ୟନ୍ତ ମଧୁସୂଦନ ନିଜର ଦୃଢ଼ତା ତ୍ୟାଗ କରି ନ ଥିଲେ କି କାହାରି ଉପରେ ବୋଝ ହୋଇ ରହି ନ ଥିଲେ । ଦିନେ ଯେଉଁ କୋଠାଟି ତାଙ୍କର ଥିଲା ନିଲାମ ପରେ ସେ ସେହି କୋଠାରେ ଭଡ଼ା ଦେଇ ରହୁଥିଲେ । ସେହି କୋଠାଟିକୁ ତାଙ୍କର ଜଣେ ସମ୍ପର୍କୀୟ ନିଲାମ ଧରିଥିଲେ । ଦୁର୍ଭାଗ୍ୟର ବିଷୟ, ତାଙ୍କରି ଠାରୁ ଅର୍ଥ ହଡ଼ପ କରି ତାଙ୍କର ସେହି ସମ୍ପର୍କୀୟ ହିଁ କୋଠାଟିକୁ ନିଲାମ ଧରିଥିଲେ । ଆଉ ଖୁସି କଥା ଏହା ଯେ, ମଧୁସୂଦନଙ୍କୁ ଏକଥା ଜଣାଥିଲେ ମଧ ସେ ନିର୍ବିକାର

ଥିଲେ । ଏମିତି କି ମାସିକ ଘରଭଡ଼ା ଟଙ୍କା ଦେବାରେ ସେ କେବେ ବି ଅବହେଳା କରୁ ନ ଥିଲେ । ଥରେ ମଧୁସୂଦନ କିଛି ମାସର ଭଡ଼ା ଦେଇ ପାରି ନ ଥିଲେ । ଏହାକୁ ଏକ ଦୋଷାବହ ଘଟଣା ବୋଲି ମନେକରି ୧୯୨୭ ମସିହା ଡିସେମ୍ବର ମାସ ୩ ତାରିଖ ଦିନ ସେ ଭଡ଼ାଘରର ମାଲିକ ଅର୍ଥାତ ତାଙ୍କର ସେହି ସ୍ୱାର୍ଥପର ଆତ୍ମୀୟ ନିକଟକୁ ଏକ ପତ୍ରଲେଖି ଜଣେଇଥିଲେ- 'ମୁଁ ଆପଣଙ୍କ ପାଖକୁ ଆଜି ୨୦୦ଟଙ୍କା ପଠାଇ ଦେଇଛି । ସେଥିରେ ସେପ୍ଟେମ୍ବର ମାସ ଶେଷ ସୁଦ୍ଧା ଆପଣଙ୍କର ଘରଭଡ଼ା ଚୁକ୍ତି ହୋଇଯିବ । ଅବଶିଷ୍ଟ ଯାହା ମୋ ଠାରୁ ଆପଣଙ୍କର ପ୍ରାପ୍ୟ ରହିଲା, ତାହାକୁ ମଧ ଯଥାଶୀଘ୍ର ମୁଁ ଛିଣ୍ଡାଇ ଦେବାକୁ ଚେଷ୍ଟା କରୁଛି । ମତେ ବର୍ତ୍ତମାନ ଅବଶ୍ୟ ଖୁବ୍ କଠିନ ପରିଶ୍ରମ କରିବାକୁ ପଡୁଛି । କିନ୍ତୁ ଭଗବାନଙ୍କୁ ଧନ୍ୟବାଦ ଯେ ରାତି ୨ଟା ଯାଏ ବସି କାମ କରିବା ଲାଗି ସେ ମୋତେ ଏବେ ବି ଶକ୍ତି ଦେଇଛନ୍ତି ।'

## ସାଇମନ୍ କମିଶନ୍

୧୯୨୭ ମସିହାଟି ଭାରତ ତଥା ଓଡ଼ିଶା ପାଇଁ ଆଉ ଏକ ସ୍ମରଣୀୟ ବର୍ଷ ଥିଲା । ଏହି ବର୍ଷ ନଭେମ୍ବର ମାସ ୨୭ ତାରିଖରେ ଭାରତ ଶାସନରେ ଆଉ କ'ଣ ଅଧିକ ସଂସ୍କାର କରାଯାଇପାରେ ତାହାର ପରୀକ୍ଷା ନିରୀକ୍ଷା କରି ଦେଖିବା ପାଇଁ ଇଂଲଣ୍ଡର ମହାମାନ୍ୟ ପଞ୍ଚମ ଜର୍ଜ 'ଇଣ୍ଡିଆନ୍ ଷ୍ଟାଚ୍ୟୁଟାରୀ କମିଶନ୍' ନିଯୁକ୍ତ କଲେ । ସାର ଜନ୍ ଆଲସିବ୍ରୁକ୍ ସାଇମନ୍ ଏହି କମିଶନ୍‌ର ଚେୟାରମ୍ୟାନ୍ ଥିଲେ । ଏହାକୁ ହିଁ ଭାରତୀୟମାନେ ସଂକ୍ଷେପରେ 'ସାଇମନ୍ କମିଶନ୍' ବୋଲି କହୁଥିଲେ । ଭାରତରେ କେଉଁ କେଉଁ ନୂତନ ପ୍ରଦେଶ ଗଠନ କରାଯିବ, ତାହା ଦ୍ୱାରା କିଭଳି ସମସ୍ୟାମାନ ମୁଣ୍ଡ ଟେକିବାର ସମ୍ଭାବନା ରହିଛି, ପୁଣି ଯଦି ସମସ୍ୟା ମୁଣ୍ଡ ଟେକେ ତା'ହେଲେ କିଭଳି ତାହାର ସମାଧାନ କରାଯିବ ଏହି ସବୁ ବିଷୟର ତଦାରଖ କରି ସୁପାରିଶ କରିବା 'ସାଇମନ୍ କମିଶନ୍'ର ମୂଳ ଉଦ୍ଦେଶ୍ୟ ଥିଲା । ମାତ୍ର ଏହି କମିଶନ ଗଠିତ ହେଉହେଉ ଖୁବ୍ ବିବାଦୀୟ ହୋଇପଡିଲା । ଏମିତିକି ଭାରତର ସ୍ୱାଧୀନତା ସଂଗ୍ରାମୀମାନେ 'ସାଇମନ୍ ଗୋ ବ୍ୟାକ୍' ବୋଲି ସ୍ଲୋଗାନ ଦେବା ପାଇଁ ମଧ ପଛେଇ ନ ଥିଲେ । ଏହି କମିଶନ୍‌ରେ କୌଣସି ଭାରତୀୟ ସଭ୍ୟଙ୍କୁ ସାମିଲ କରାଯାଇ ନଥିବା କାରଣରୁ ଭାରତୀୟ ଜାତୀୟ କଂଗ୍ରେସ ଏହାର ଦୃଢ଼ ବିରୋଧ କରିଥିଲା ।

## ଜାତିପ୍ରାଣ ମଧୁସୂଦନ

ଓଡ଼ିଶାରେ ମଧ୍ୟ 'ସାଇମନ କମିଶନ' ବିରୋଧୀ ହାୱା ବହିବାରେ ଲାଗିଥିଲା । ୧୯୨୮ ମସିହା ଫେବୃଆରୀ ମାସରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ 'ସାଇମନ୍ କମିଶନ୍'କୁ ବିରୋଧ କରାଯାଇଥିଲା । ସେହିବର୍ଷ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ନେତୃତ୍ୱରେ ଓଡ଼ିଶା କଂଗ୍ରେସର ସଭ୍ୟମାନେ 'ସାଇମନ କମିଶନ'ଙ୍କୁ ବିରୋଧ କରି ପ୍ରସ୍ତାବମାନ ଆଗତ କରିଥିଲେ । ମାତ୍ର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନେଇ ସଦାସର୍ବଦା ସ୍ୱପ୍ନ ଦେଖି ଆସୁଥିବା ମଧୁସୂଦନ 'ସାଇମନ କମିଶନ୍' ଗଠନକୁ ବିରୋଧ କରିବା ବିଷୟ ଚିନ୍ତା ମଧ୍ୟ କରି ପାରିଲେ ନାହିଁ । ସେ ଏହାକୁ ଭିନ୍ନ ଦୃଷ୍ଟିରେ ଦେଖୁଥିଲେ । ତାଙ୍କର ଦୃଷ୍ଟିଭଙ୍ଗୀ ଓ ଚିନ୍ତାଧାରା ସମ୍ପୂର୍ଣ୍ଣ ଭିନ୍ନ ଥିଲା । ତାଙ୍କ ଦୃଷ୍ଟିରେ 'ସାଇମନ କମିଶନ' ଓଡ଼ିଶାବାସୀଙ୍କ ପାଇଁ ଏକ ସୁବର୍ଣ୍ଣ ସୁଯୋଗ ନେଇ ଆସିଥିଲା, ଯାହାକୁ ସେ କେବେ ବି ହାତଛଡ଼ା କରିବା ପାଇଁ ଚାହୁଁ ନ ଥିଲେ । ମଧୁସୂଦନଙ୍କର ଦୃଷ୍ଟିଭଙ୍ଗୀ କେତେ ସୁଦୂରପ୍ରସାରୀ ଥିଲା ଏବଂ ସେ କେତେ ଆଗକୁ ଯାଇ ଗୋଟିଏ ଘଟଣା ବିଷୟରେ ଚିନ୍ତା କରି ପାରୁଥିଲେ ଶେଷରେ ଏହି କଥା ପ୍ରମାଣିତ ହେଲା । ନହେଲେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓଡ଼ିଆ ଭାଷାଭାଷୀ ଲୋକଙ୍କ ପାଇଁ ଏକ ସ୍ୱପ୍ନ ହେଇ ରହିଯାଇଥାନ୍ତା ।

ବାର୍ଦ୍ଧକ୍ୟ ସତ୍ତ୍ୱେ ମଧୁସୂଦନଙ୍କ ମନୋବଳ କମିଯାଇ ନ ଥିଲା । ସେ ତତ୍କାଳୀନ ଓଡ଼ିଶାର କେତେକ ଉତ୍ସାହୀ ବ୍ୟକ୍ତିଙ୍କୁ ଏକଜୁଟ କଲେ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି ନେଇ 'ସାଇମନ୍ କମିଶନ୍'ଙ୍କ ନିକଟରେ ସାକ୍ଷ୍ୟ ପ୍ରଦାନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ୧୯୨୮ ମସିହା ଡିସେମ୍ବର ମାସରେ ପାଟନାଠାରେ ସାଇମନ କମିଶନ୍‌ଙ୍କ ବୈଠକ ଅନୁଷ୍ଠିତ ହେବାର କାର୍ଯ୍ୟକ୍ରମ ରହିଥିଲା । ତେଣୁ ମଧୁସୂଦନଙ୍କ ନିର୍ଦ୍ଦେଶରେ ବିହାର-ଓଡ଼ିଶା ଲେଜିସଲେଟିଭ୍ କାଉନ୍‌ସିଲ ପକ୍ଷରୁ ଗୋପାଳ ଚନ୍ଦ୍ର ପ୍ରହରାଜ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଲକ୍ଷ୍ମୀଧର ମହାନ୍ତି, ବାରିଷ୍ଟର ବିଶ୍ୱନାଥ ମିଶ୍ର, ଭିକାରି ଚରଣ ପଟ୍ଟନାୟକ, ବ୍ରଜସୁନ୍ଦର ଦାସ ପ୍ରମୁଖ କମିଶନଙ୍କ ଆଗରେ ସାକ୍ଷ୍ୟ ପ୍ରଦାନ କରିବା ପାଇଁ ମନୋନୀତ ହେଲେ । ଏମାନେ ୧୯୨୮ ମସିହା ଡିସେମ୍ବର ମାସ ୧୨ ତାରିଖରେ ସାଇମନ କମିଶନ୍ ପାଟ୍‌ନା ରେଳ ଷ୍ଟେସନ୍ ଠାରେ ପହଞ୍ଚିବା ବେଳେ ବ୍ରଜସୁନ୍ଦର ଦାସଙ୍କ ନେତୃତ୍ୱରେ ଓଡ଼ିଶା ପକ୍ଷରୁ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କଲେ । କହିବା ବାହୁଲ୍ୟ ଏହି କୂଟନୀତି ମଧ୍ୟ ମଧୁସୂଦନଙ୍କ ନିର୍ଦ୍ଦେଶରେ ଅବଲମ୍ବନ କରାଯାଇଥିଲା । ମଧୁସୂଦନଙ୍କ ନିର୍ଦ୍ଦେଶରେ ଗଠିତ ଏହି

କମିଟି ସ୍ୱତନ୍ତ୍ର ଓଡ଼ିଶା ଗଠନ ନିମନ୍ତେ କମିଶନ୍‌ଙ୍କ ନିକଟରେ ଦାବି ଜଣାଇଲେ । ନହେଲେ ଓଡ଼ିଶା ଲୋକଙ୍କ ନିମନ୍ତେ କମିଶନ୍‌ଙ୍କ ସୁପାରିଶର କୌଣସି ମୂଲ୍ୟ ରହିବ ନାହିଁ ବୋଲି ଜଣାଇଦେଲେ । ଏହା ପୂର୍ବରୁ ଅର୍ଥାତ୍ ସେହିବର୍ଷ ମେ' ମାସ ୩୦ ତାରିଖରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ମାନ୍ଦ୍ରାଜ ଓଡ଼ିଆ ଆସୋସିଏସନ ପକ୍ଷରୁ ମାନ୍ଦ୍ରାଜ୍ ଠାରେ ସାଇମନ୍ କମିଶନ୍‌ଙ୍କୁ ଏକ ଦାବିପତ୍ର ପ୍ରଦାନ କରାଯାଇଥିଲା । ଅପରପକ୍ଷରେ ସାଇମନ କମିଶନ ମଣ୍ଟେଗୁ-ଚେମସ୍‌ଫୋର୍ଡ କମିଟିର ଦୃଷ୍ଟିକୋଣକୁ ପାଥେୟ କରି ଭାରତରେ ନୂତନ ପ୍ରଦେଶ ଗଠନ କରିବା ପାଇଁ ଚାହୁଁ ନ ଥିଲେ । ତେଣୁ ସେ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିଲେ- 'ବିହାର ଓ ଓଡ଼ିଶାକୁ ନେଇ ବର୍ତ୍ତମାନ ଯେଉଁ ମିଳିତ ପ୍ରଦେଶ ଗଠନ କରାଯାଇଛି, ତାହା ସମ୍ପୂର୍ଣ୍ଣ ଏକ କୃତ୍ରିମ ଓ ଅସ୍ୱାଭାବିକ ମିଳନ ଅଟେ । କାରଣ ଏହି ଦୁଇଟି ଅଞ୍ଚଳ ମଧ୍ୟରେ କୌଣସି ପ୍ରକାର ସାମଞ୍ଜସ୍ୟ ନାହିଁ ।'

ତେବେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କିତ ଦାବିର ପୂର୍ଣ୍ଣାଙ୍ଗ ବିଚାର ଆଲୋଚନା କରିବା ଲାଗି ସାଇମନ କମିଶନ ମେଜର ଅଟ୍‌ଲୀଙ୍କ ନେତୃତ୍ୱରେ ଏକ ସବ୍-କମିଟି ଗଠନ କଲେ । ଏହି ସବ୍-କମିଟିର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କିତ ସୁପାରିଶ ଶୁଣିବା ପରେ ସାଇମନ କମିଶନ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିଲେ, 'ଭାରତରେ ବର୍ତ୍ତମାନ ଯେଉଁ ସବୁ ପ୍ରାଦେଶିକ ବିଭାଗ ରହିଛି, ସେଗୁଡିକର ବିଭାଗୀକରଣ ବିଷୟ ବିଚାର କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସୀମା ନିର୍ଣ୍ଣିତ ହେବା ଦରକାର ।'

୧୯୩୦ ମସିହା ମେ' ମାସରେ ସାଇମନ କମିଶନ୍ ତାଙ୍କର ରିପୋର୍ଟ ଦାଖଲ କଲେ । ସେହିବର୍ଷ ନଭେମ୍ବର ମାସ ୧୬ ତାରିଖ ଠାରୁ ତା' ପରବର୍ଷ ଅର୍ଥାତ୍ ୧୯୩୧ ମସିହା ଜାନୁଆରୀ ମାସ ୧୯ ତାରିଖ ପର୍ଯ୍ୟନ୍ତ ଭାରତରେ ଶାସନ ସଂସ୍କାର ସମ୍ପର୍କିତ ଆଲୋଚନା ଲାଗି ଲଣ୍ଡନ ଠାରେ ପ୍ରଥମ ଗୋଲ ଟେବୁଲ ବୈଠକ ବସିଲା । ଏହି ବୈଠକରେ ବିହାର-ଓଡ଼ିଶା ଜମିଦାର ସଙ୍ଘର ପ୍ରତିନିଧି ରୂପେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୯୩୧ ମସିହା ଜାନୁଆରୀ ମାସ ୧୬ ତାରିଖ ଦିନ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରାଯାଉ ବୋଲି ବିଧିବଦ୍ଧ ଭାବରେ ଏକ ପ୍ରସ୍ତାବ ଆଗତ କରିଥିଲେ । ଏହି ପ୍ରସ୍ତାବକୁ ଆଧାର କରି ସେହିବର୍ଷ ସାର୍ ସାମୁଏଲ ଓଡ୍‌ନେଲଙ୍କ ସଭାପତିତ୍ୱରେ ଭାରତରେ ଥିବା ଇଂରେଜ ସରକାରଙ୍କ ପକ୍ଷରୁ 'ଓଡ଼ିଶା

କମିଟି ବା ଓଡ୍‌ନେଲ କମିଟି' ନାମରେ ଏକ କମିଟି ଗଠନ କରାଗଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଅଟ୍‌ଲୀ କମିଟି ଯେଉଁ ପ୍ରସ୍ତାବ ଦେଇଛନ୍ତି ସେହି ପ୍ରସ୍ତାବ ଅନୁଯାୟୀ ଓଡ଼ିଶା ପ୍ରଦେଶର ସୀମା ନିର୍ଣ୍ଣୟ କରିବା ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲେ ତାହାର ଶାସନଗତ ଓ ଆର୍ଥିକ ବ୍ୟାପାର କିଭଳି ରହିବ ସେହିସବୁ ବିଷୟ ଉପରେ ପୁଙ୍ଖାନୁପୁଙ୍ଖ ବିଚାର କରି ରିପୋର୍ଟ ପ୍ରଦାନ କରିବା 'ଓଡ଼ିଶା କମିଟି'ର ମୁଖ୍ୟ କାର୍ଯ୍ୟ ଥିଲା । ସେହିବର୍ଷ ସେପ୍ଟେମ୍ବର ମାସ ୧୮ ତାରିଖରେ ଓଡ୍‌ନେଲ କମିଟିର ପ୍ରଥମ ବୈଠକ ପାଟ୍‌ନା ଠାରେ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ସାକ୍ଷ୍ୟ ଦେବା ଲାଗି ଖୋଦ୍ ମଧୁସୂଦନ ଓଡ଼ିଶାରୁ ପାଟ୍‌ନା ଯାଇଥିଲେ । ନଭେମ୍ବର ୨୦ ତାରିଖରେ ସେ ଜାମସେଦପୁର ଠାରେ ଏକ ସାଧାରଣ ସଭାର ଆୟୋଜନ କରାଇ ସିଂହଭୂମକୁ ଓଡ଼ିଶା ସହିତ ସାମିଲ କରିବା ନେଇ ଜନମତ ସୃଷ୍ଟି କରିବାର ପ୍ରୟାସ କରିଥିଲେ ।

ବାସ୍ତବରେ 'ଓଡ଼ିଶା କମିଟି ବା ଓଡ୍‌ନେଲ କମିଟି' ଗଠିତ ହେବା ପରେ ମଧୁସୂଦନଙ୍କର କାର୍ଯ୍ୟଭାର ବହୁତ ବଢ଼ି ଯାଇଥିଲା । କମିଟି ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ କାଗଜପତ୍ର ପ୍ରସ୍ତୁତ କରିବା, ବିଭିନ୍ନ ସାକ୍ଷ୍ୟଗୁଡିକୁ ଲିପିବଦ୍ଧ କରିବା, ସେ ସମ୍ପର୍କିତ ବିଭିନ୍ନ ଯୁକ୍ତି ସବୁକୁ କ୍ରମାନ୍ୱୟରେ ସଜାଡ଼ି ରଖିବା ଆଦି କାମ ସେ ଅତି ଶ୍ରଦ୍ଧା ଓ ଆଗ୍ରହର ସହିତ କରି ଚାଲୁଥିଲେ । ଏଥିପାଇଁ ସେ ଘଡ଼ିଏ ବି ବିଶ୍ରାମ ନେବାକୁ ଚାହୁଁ ନ ଥିଲେ; ବରଂ ଏଥିପାଇଁ ତାଙ୍କୁ ବିଳମ୍ବିତ ରାତି ଯାଏ ବସି କାମ କରିବା ପାଇଁ ପଡୁଥିଲା । ଏହାବ୍ୟତୀତ ସାଇମନ କମିଶନ୍‌ଙ୍କ ସୁପାରିଶରେ ଗଠିତ ଅଟ୍‌ଲୀ କମିଟି ପ୍ରସ୍ତାବିତ ଓଡ଼ିଶା ପ୍ରଦେଶ ସହିତ ସିଂହଭୂମ ଜିଲ୍ଲାକୁ ମିଶ୍ରଣ କରିବା ନିମନ୍ତେ ସୁପାରିଶ କରି ନ ଥିବାରୁ ତାହା ମଧୁସୂଦନଙ୍କ ଚିନ୍ତାକୁ ଆହୁରି ବଢ଼ାଇ ଦେଇଥିଲା । ଅବଶ୍ୟ ଏଥି ନିମନ୍ତେ 'ଓଡନେଲ କମିଟି' ନିକଟରେ ଆପତ୍ତି ଅଭିଯୋଗ କରାଯାଇ ପୁନର୍ବାର ଆବେଦନ କରାଯାଇଥିଲା । ହେଲେ ମଧୁସୂଦନ ସେତିକିରେ ସନ୍ତୁଷ୍ଟ ନ ଥିଲେ । ସେ ମନେ କରୁଥିଲେ ଯଦି ଏଥିନେଇ ଜନ ଜାଗରଣ ସୃଷ୍ଟି କରା ନ ଯାଏ ତେବେ ଓଡ଼ିଶାରେ ସିଂହଭୂମ ମିଶ୍ରଣ ଦାବି କେବଳ କାଗଜପତ୍ରରେ ହିଁ ସୀମିତ ହୋଇ ରହିଯିବ । ସେଥିଲାଗି ଯେଉଁ ସମୟରେ ଜଣେ ବ୍ୟକ୍ତି ଘରେ ରହି ବିଶ୍ରାମ ନେବା କଥା ସେହି ସମୟରେ ମଧୁସୂଦନ ବିଭିନ୍ନ ଅଞ୍ଚଳ ବୁଲି ଜନମତ ସୃଷ୍ଟି କରିବାରେ ଲାଗି ପଡ଼ିଥିଲେ ।

ଏହି ସମୟରେ ସାର ଜନ୍ ଏ. ହବାକ୍‌ଙ୍କ ସଭାପତିତ୍ୱରେ 'ଓଡ଼ିଶା ଆଡମିନିଷ୍ଟ୍ରେଟିଭ କମିଟି' ଗଠିତ ହେଲା । ନୂତନ ଭାବରେ ଗଠିତ ହେବାକୁ ଯାଉଥିବା ଓଡ଼ିଶା ପ୍ରଦେଶର ଶାସନ ବ୍ୟବସ୍ଥା ସମ୍ପର୍କରେ ସୁପାରିଶ କରିବା ଲକ୍ଷ୍ୟ ନେଇ ଭାରତ ସରକାର ଏଭଳି ଏକ ନୂତନ କମିଟି ଗଠନ କରିଥିଲେ । ମଧୁସୂଦନଙ୍କୁ ବି ଏହାର ସଭ୍ୟ ଭାବରେ ସାମିଲ କରାଯାଇଥିଲା । ଏହା ଦ୍ୱାରା ବୁଢ଼ା ବୟସରେ ମଧୁସୂଦନଙ୍କର କାର୍ଯ୍ୟଭାର ବଢ଼ିଯାଇଥିଲା ସତ; ମାତ୍ର କାର୍ଯ୍ୟ କରିବାରେ ସେ ସାମାନ୍ୟ ବି ଅବହେଳା କରି ନ ଥିଲେ । ସତନ୍ତ୍ର ଓଡ଼ିଶା ପ୍ରଦେଶର ଶାସନ ବ୍ୟବସ୍ଥା ସମ୍ପର୍କରେ ସୁଚିନ୍ତିତ ପରାମର୍ଶମାନ ଦେଇ ମଧୁସୂଦନ 'ଓଡ଼ିଶା ଆଡମିନିଷ୍ଟ୍ରେଟିଭ କମିଟି'ର ସଭାପତି ଜନ୍ ହବାକ୍‌ଙ୍କୁ ପ୍ରଭାବିତ କରିଥିଲେ । ସମସ୍ତ ବିଚାର ବିମର୍ଶ, ଆଲୋଚନା ପର୍ଯ୍ୟାଲୋଚନା ଶେଷ ହେବା ପରେ ଜନ୍ ହବାକ୍ ମଧୁସୂଦନଙ୍କୁ ଏକ ବ୍ୟକ୍ତିଗତ ପତ୍ର ଲେଖି ବୟସାଧିକ୍ୟ ସତ୍ତ୍ୱେ ତାଙ୍କୁ ଅକୁଣ୍ଠ ସହଯୋଗ କରିଥିବା ହେତୁ କୃତଜ୍ଞତା ଜଣାଇ ଲେଖିଥିଲେ- 'ଆପଣ ନିଶ୍ଚୟ ଜାଣି ଖୁସି ହେବେ ଯେ, ଆପଣ ଯେଉଁ କାମ ଲାଗି ଜୀବନସାରା ଲାଗି ରହିଲେ, ଆପଣଙ୍କର ସେ ଉଦ୍ଦେଶ୍ୟ ବର୍ତ୍ତମାନ ପୂରଣ ହେବା ଖୁବ ନିକଟ ହୋଇ ଆସିଲା ।'

ଏବେ 'ଓଡ଼ିଶା ଆଡମିନିଷ୍ଟ୍ରେଟିଭ କମିଟି' ସଭ୍ୟମାନଙ୍କର କଟକରୁ ଫେରିବାର ସମୟ ଉପସ୍ଥିତ ହେଲା । ମଧୁସୂଦନ ସେମାନଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବାକୁ ମନ ସ୍ଥିର କରିଥିଲେ । ପୂର୍ବରୁ ଭାରତର ବା ବ୍ରିଟେନ୍‌ର ଯେଉଁ ବିଶିଷ୍ଟ ବ୍ୟକ୍ତିଗଣ କଟକ ଆସୁଥିଲେ ମଧୁସୂଦନ ନିଜ କୋଠୀରେ ସେମାନଙ୍କୁ ଆପ୍ୟାୟିତ କରି ହିଁ ଫେରାଉଥିଲେ । ସେତେବେଳେ ଅବଶ୍ୟ ତାଙ୍କର ବୟସ ଥିଲା; ରୋଜଗାର ମଧ ଥିଲା । ମାତ୍ର ଏବେ ନା ରୋଜଗାର ଥିଲା ନା ବୟସ । ଏମିତିକି ଅତିଥିମାନଙ୍କୁ ଡାକି ବସେଇବା ପାଇଁ ଘର ଖଣ୍ଡିଏ ବି ନ ଥିଲା । ତାଙ୍କ ପ୍ରତି ଏହା ନିୟତିର ପରିହାସ ଥିଲା । ମାତ୍ର ନିୟତିର ଏହି ପରିହାସକୁ ମାନିନେବା ପାଇଁ ମଧୁସୂଦନ କେବେ ବି ପ୍ରସ୍ତୁତ ନ ଥିଲେ । ସେ ଦିନେ ଅପରାହ୍ନରେ ଓଡ଼ିଶା ବ୍ୟାଙ୍କର ଡାଇରେକ୍ଟରଙ୍କ ନିକଟରେ ପହଞ୍ଚି କହିଲେ- ସେ ତାଙ୍କୁ ପାଞ୍ଚଶହ ଟଙ୍କା ଋଣ ଦେଇ ପାରିବେ କି ? କିନ୍ତୁ ଋଣ ନେବା ପାଇଁ ଜାମିନ ଦେବାକୁ ତୁଣ୍ଡର ପ୍ରତିଶ୍ରୁତି ବ୍ୟତୀତ ଆଉ କିଛି ତାଙ୍କ ପାଖରେ ନାହିଁ ।

ମଧୁସୂଦନଙ୍କର ଏଭଳି କଥା ଓଡ଼ିଶା ବ୍ୟାଙ୍କର ଡାଇରେକ୍ଟରଙ୍କୁ ବିସ୍ମିତ କରି ଦେଇଥିଲା । ସେ ପଚାରିଥିଲେ- ଏମିତି କ'ଣ ଦରକାର ପଡିଲା ଯେ ଆପଣ ବ୍ୟାଙ୍କରୁ ଋଣ ନେବାକୁ ଚାଲି ଆସିଲେ ? ମଧୁସୂଦନ ତାଙ୍କୁ ବୁଝେଇ ଦେଲେ, ଓଡ଼ିଶା ଆଡମିନିଷ୍ଟ୍ରେଟିଭ୍ କମିଟିର ସଭ୍ୟମାନଙ୍କୁ ଯିବା ବେଳେ ଗୋଟିଏ ଡିନର ପାର୍ଟି ନ ଦେଲେ ଏହା ଓଡ଼ିଶା ପାଇଁ ଖୁବ୍ ଅପମାନଜନକ କଥା ହେବ । ଓଡ଼ିଆମାନଙ୍କର ମୁଣ୍ଡ ତଳକୁ ହୋଇଯିବ । ଆଉ ସେମାନଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବା ଲାଗି ତାଙ୍କ ନିକଟରେ କାଣି କଉଡ଼ିଟାଏ ବି ନାହିଁ ।

ମଧୁସୂଦନ ବ୍ୟାଙ୍କରୁ ଅଗ୍ରୀମ ଋଣ ନେଇ ଫେରିଲେ ଏବଂ ଓଡ଼ିଶା ଆଡମିନିଷ୍ଟ୍ରେଟିଭ୍ କମିଟିର ସଭ୍ୟମାନଙ୍କୁ ଆପ୍ୟାୟିତ କରି କଟକରୁ ବିଦାୟ ଦେଲେ । ମଧୁସୂଦନଙ୍କର ଏମିତି ଏକ ସମ୍ଭ୍ରାନ୍ତ ମିଜାଜ ଥିଲା । ସେ ସଂଗ୍ରାମ କରିବାକୁ ସବୁବେଳେ ପ୍ରସ୍ତୁତ ହୋଇ ରହୁଥିଲେ; ମାତ୍ର ଓଡ଼ିଆମାନଙ୍କର ମୁଣ୍ଡ ତଳକୁ କରି ଦିଅନ୍ତୁ, ଏହା କେତେବେଳେ ବି ଚାହୁଁ ନ ଥିଲେ । ପ୍ରଥିତଯଶା ସାହିତ୍ୟିକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ, " ଉପରୋକ୍ତ ଘଟଣାଟି ସାଭିମାନୀ ମଧୁସୂଦନଙ୍କର ଭାଗ୍ୟ ସହିତ ଶେଷ ସଂଗ୍ରାମ ଥିଲା !"

## ଯନ୍ତ୍ରଣା ବି ଥମିଗଲା

୧୯୩୧ ମସିହା ଜାନୁଆରୀ ମାସ ୧୯ ତାରିଖରେ ପ୍ରଥମ ଗୋଲ ଟେବୁଲ ବୈଠକ ଶେଷ ହୋଇଗଲା । ସେହିବର୍ଷ ସେପ୍ଟେମ୍ବର ମାସ ୭ ତାରିଖରେ ଦ୍ୱିତୀୟ ଗୋଲ ଟେବୁଲ ବୈଠକ ଆରମ୍ଭ ହେଲା ଏବଂ ଏଥିରେ ମହାତ୍ମା ଗାନ୍ଧୀ ଭାରତର ପ୍ରତିନିଧି ଭାବରେ ଯୋଗ ଦେଇଥିଲେ । ଏହା ଡିସେମ୍ବର ଯାଏ ଚାଲିଥିଲା । ତୃତୀୟ ଗୋଲ ଟେବୁଲ ବୈଠକ ୧୯୩୨ ମସିହା ନଭେମ୍ବର ମାସ ୧୯ ତାରିଖରୁ ଡିସେମ୍ବର ମାସ ୨୪ ତାରିଖ ଯାଏ ଅନୁଷ୍ଠିତ ହୋଇଥିଲା । ତୃତୀୟ ଗୋଲ ଟେବୁଲ ବୈଠକ ହିଁ ଓଡ଼ିଶା ତଥା ଓଡ଼ିଶାବାସୀଙ୍କ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଓଡ଼ିଶାରୁ ଏହି ବୈଠକରେ ଖଲିକୋଟର ରାଜା ଶ୍ରୀରାମଚନ୍ଦ୍ର ମର୍ଦ୍ଦରାଜ ଓ ବ୍ରିଟେନ୍‌ରେ ଇଞ୍ଜିନିୟରିଂ ଡିଗ୍ରୀପ୍ରାପ୍ତ ଭୁବନାନନ୍ଦ ଦାସ ଯୋଗ ଦେଇଥିଲେ । ବାସ୍ତବରେ କହିବାକୁ ଗଲେ ଏହି ଦୁଇଜଣଙ୍କ ଉପରେ ହିଁ ସତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଭାଗ୍ୟ ନିର୍ଭର କରୁଥିଲା ।

ସେତେବେଳକୁ ମଧୁସୂଦନଙ୍କ ସ୍ୱାସ୍ଥ୍ୟାବସ୍ଥା ସଙ୍କଟାପନ୍ନ ହୋଇ ପଡିଥିଲା । ତାଙ୍କ ଅନ୍ତଃନଳୀରେ ଘା' ହୋଇଥିବା ଯୋଗୁ ସେ ଖୁବ ଯନ୍ତ୍ରଣା ଭୋଗ କରୁଥିଲେ । ତାଙ୍କୁ କଲିକତାର ଏକ ନର୍ସିଂହୋମରେ ଭର୍ତ୍ତି କରାଯାଇ ଚିକିତ୍ସା କରାଯାଉଥିଲା । ଏଭଳି ଏକ ଦାରୁଣ ମୁହୂର୍ତ୍ତରେ ଯେତେବେଳେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରାଣ ପ୍ରତିଷ୍ଠାତା ମଧୁସୂଦନ ଉଦରପୀଡ଼ାରେ ସନ୍ତୁଳି ହେଉଥିଲେ ସେହି ସମୟରେ ବ୍ରିଟେନ୍‌ରେ ଚାଲିଥିବା ତୃତୀୟ ଗୋଲ ଟେବୁଲ ବୈଠକରେ ତାଙ୍କ ସ୍ୱପ୍ନର ସ୍ୱତନ୍ତ୍ର ଓଡ଼ିଶା ସମ୍ପର୍କିତ ଦାବି ଉପସ୍ଥାପିତ ହେଉଥିଲା । ୧୯୩୨ ମସିହା ଡିସେମ୍ବର ମାସ ୭ ତାରିଖ ଦିନ ରାମଚନ୍ଦ୍ର ମର୍ଦ୍ଦରାଜ ଓଡ଼ିଆ ଜାତି ପକ୍ଷରୁ ତାଙ୍କର ଦାବି ଉପସ୍ଥାପନ କରିଥିଲେ । ଏହି ଦାବି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନେଇ ବେଶ୍ ତାତ୍ପର୍ଯ୍ୟ ବହନ କରୁଥିଲା । ଗୋଲ ଟେବୁଲ ବୈଠକର ଶେଷ ଦିନରେ ଅର୍ଥାତ ୧୯୩୨ ମସିହା ଡିସେମ୍ବର ୨୪ ତାରିଖରେ ଲର୍ଡ ସାଙ୍କିଙ୍କ ଅଧ୍ୟକ୍ଷତାରେ ବସିଥିବା ଅଧିବେଶନରେ ଭାରତର ସଚିବ ସାର ସାମୁଏଲ ହୋର ଉଦ୍‌ବୋଧନ ଦେଇ କହିଥିଲେ- 'ଆମ୍ଭେମାନେ ଦୁଇବର୍ଷ ପୂର୍ବେ ଗୋଲ ଟେବୁଲ ବୈଠକରେ ପ୍ରାରମ୍ଭିକ ଆଲୋଚନା ସମୟରୁ ସିନ୍ଧ୍ ପ୍ରଦେଶ ଗଠନ ବିଷୟରେ ବିଚାର କରିଅଛୁ । ଗଲାବର୍ଷ ଠାରୁ ପ୍ରଥମ କରି ଓଡ଼ିଶା ପ୍ରଦେଶ ଗଠନ ବିଷୟ ଉପସ୍ଥାପିତ କରିଥିଲୁ । ଏହା ମଧ୍ୟରେ ଉଭୟ ପ୍ରଦେଶ ସମ୍ପର୍କରେ ବିଶେଷଜ୍ଞମାନଙ୍କ ଦ୍ୱାରା ତଦନ୍ତ ଓ ନିରୀକ୍ଷଣ ଭିତ୍ତିକ ରିପୋର୍ଟମାନ ଆସି ପହଞ୍ଚି ସାରିଛି । ଏହି ରିପୋର୍ଟମାନଙ୍କୁ ଭିତ୍ତିକରି ମୁଁ ଏଠାରେ ଜଣାଇ ଦେବାକୁ ଚାହେଁ ଯେ ସିନ୍ଧ୍ ଓ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପରେ ଗଠିତ ହେବ ।'

ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ, ଓଡ଼ିଆ ଜାତିର ସ୍ଥିତି ନିମନ୍ତେ ଏହା ଥିଲା ଏକ ଐତିହାସିକ ଘୋଷଣା । ଏହାର ତିନିଦିନ ପରେ ଅର୍ଥାତ୍ ଡିସେମ୍ବର ୨୭ ତାରିଖରେ ରାମଚନ୍ଦ୍ର ମର୍ଦ୍ଦରାଜ 'ଆଶା'ର ସମ୍ପାଦକ ଶଶିଭୂଷଣ ରଥଙ୍କ ନିକଟକୁ ଏକ ମାର୍ମିକ ପତ୍ର ପଠାଇଥିଲେ ଏବଂ ଏହି ଚିଠିଟି ୧୯୩୩ ମସିହା ଜାନୁଆରୀ ମାସ ୧୭ ତାରିଖରେ ସାପ୍ତାହିକ 'ଆଶା'ରେ ପ୍ରକାଶିତ ହୋଇଥିଲା । ଏହି ଚିଠିରେ ସେ ଲେଖିଥିଲେ- 'ପ୍ରିୟ ଶଶିବାବୁ, ମୁଁ ଏତେ ଉତ୍ତେଜିତ ହୋଇ ପଡିଛି ଯେ, ଚିଠି ଖଣ୍ଡେ ଲେଖି ପାରୁନାହିଁ । ଏହା ହେଉଛି ଗୋଲ ଟେବୁଲ ବୈଠକର ସର୍ବଶ୍ରେଷ୍ଠ ଜୟ ସମ୍ଭାର । ଉଦ୍‌ବେଗ ଆଉ ଉତ୍‌କଣ୍ଠା ମଧ୍ୟ ଶେଷ ସୀମାରେ ପହଞ୍ଚିଥିଲା । ଏ

ସମସ୍ତ ଶ୍ରମ ଓ କ୍ଲାନ୍ତି ମଧ୍ୟରେ ମୁଁ ଦଶବର୍ଷ ବୁଢ଼ା ହୋଇଗଲା ପରି ଲାଗୁଛି । ସୀମା ବିଷୟ ଭାରତ ସରକାର ସ୍ଥିର କରିବେ । ଏ ବିଷୟ ମଧ୍ୟ ଏଠାରେ ଉଠାଇଥିଲି । କିନ୍ତୁ ଏଠାରେ ଏମାନେ ମାନଚିତ୍ର ନେଇ ବ୍ୟସ୍ତ ହେବାକୁ ରାଜି ନୁହନ୍ତି । ଏସବୁ ମୋତେ ସପ୍ନ ପରି ଲାଗୁଛି । ମୁଁ ଲଣ୍ଡନରେ ପହଞ୍ଚିବା ବେଳେ ସେମାନେ ସମସ୍ତେ ମୋତେ ଦେଖି ହସୁଥିଲେ । ଓଡ଼ିଶା ପାଇଁ ସତନ୍ତ୍ର ପ୍ରଦେଶ ହେବ ବୋଲି ହାସ୍ୟ କରିଥିଲେ । ଏଠାରେ ଅନେକ ହିଡ଼ହଣା କାର୍ଯ୍ୟ କରିବାକୁ ପଡ଼ିଲା । ତରୁଣ ଓଡ଼ିଶାକୁ ମୋର ଅଭିନନ୍ଦନ ଜଣାଇବେ ।'

'ଆଶା' ସହିତ 'ସମାଜ'ରେ ମଧ୍ୟ ଏହି ଖବର ପ୍ରକାଶିତ ହେଲା । ଖବର ପ୍ରକାଶିତ ହେବା ମାତ୍ରେ ଓଡ଼ିଶାର ପୁରପଲ୍ଲୀରେ ଯେମିତି ଆନନ୍ଦର ଲହରୀ ଖେଳିଗଲା । କଟକ, ବ୍ରହ୍ମପୁର, ପାଟଣା ସମେତ କଲିକତାର ଅନେକ ସ୍ଥାନରେ ଥିବା ଓଡ଼ିଆମାନେ ସଭାସମିତି କରି ସେହି ଦିନଟିକୁ ସ୍ମରଣୀୟ କରିବାରେ ଲାଗି ପଡିଥିଲେ ।

କଲିକତାର ନର୍ସିଂହୋମରେ ବି ଏଇ କଥାଟି ପହଞ୍ଚି ସାରିଥିଲା । ଯେତେବେଳେ ମଧୁସୂଦନ ଏହା ଶୁଣିଲେ ସେତେବେଳେ ସେ ଆନନ୍ଦରେ ଆତ୍ମହରା ହୋଇ ଉଠିଲେ । ଅନ୍ତଃନଳୀର ଯନ୍ତ୍ରଣା ଯେମିତି କିଛି ସମୟ ପାଇଁ ଉପଶମ ହୋଇଗଲା । ଶେଷରେ ତାଙ୍କର ସପ୍ନ ଯେ ସାକାର ହେବ ଆଉ ସତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେବାକୁ ବେଶି ଦିନ ଲାଗିବ ନାହିଁ ଏକଥା ଜାଣିବା ପରେ ମଧୁସୂଦନଙ୍କର ଆନନ୍ଦର ସୀମା ରହିଲା ନାହିଁ ।

## ଓଡ଼ିଆ ଜାତିକୁ ଶେଷ କଥା

୧୯୩୨ ମସିହା ଶେଷ ସୁଦ୍ଧା ସତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ବିଷୟ ପ୍ରାୟତଃ ସ୍ଥିର ହୋଇଗଲା । ୧୯୩୩ ମସିହା ଜାନୁଆରୀ ମାସ ୧୨ ତାରିଖରେ ରାମଚନ୍ଦ୍ର ମର୍ଦ୍ଦରାଜ ଭାରତ ବିଭାଗ ଶାସନ ସଚିବ ସାର ସାମୁଏଲ ହୋରଙ୍କୁ କୃତଜ୍ଞତା ଜଣେଇବା ଲାଗି ଲଣ୍ଡନର କ୍ଲାରିଜ୍ ହୋଟେଲରେ ଏକ ଭୋଜିସଭାର ଆୟୋଜନ କରିଥିଲେ । ଏହି ସଭାରେ ଯୋଗ ଦେଇ ହୋର କହିଥିଲେ- ପ୍ରଥମେ ଦୁଇବର୍ଷ ପୂର୍ବେ ପାରଳାଖେମୁଣ୍ଡି ରାଜା ଓଡ଼ିଆଙ୍କ ବିଷୟ ଗୋଲ ଟେବୁଲ ବୈଠକରେ

ଉଠାଇଥିଲେ । ମାତ୍ର ଖୁବ୍ କମ୍ ଲୋକ ତାହାର ଗୁରୁତ୍ୱ ବୁଝି ପାରିଥିଲେ । ମାତ୍ର ଖଲିକୋଟ ରାଜା ତାହାକୁ ବହୁଗୁଣିତ କଲେ ଏବଂ ଆମର ହୃଦ୍‌ବୋଧ ହେଲା ଯେ ଷୋଡ଼ଶ ଶତାବ୍ଦୀରୁ ଓଡ଼ିଆ ଜାତିକୁ ଯେପରି ଅଲଗା ଶାସନାଧୀନ କରାଯାଇଛି ତାହା ଅସୁବିଧା ସୃଷ୍ଟି କରୁଛି । ଏମାନଙ୍କୁ ଏକତ୍ରିତ କରିବାକୁ ହେବ ।

ଏହାପରେ ରାମଚନ୍ଦ୍ର ମର୍ଦ୍ଦରାଜ ଓ ଭୁବନାନନ୍ଦ ଦାସ ପ୍ରାୟ ଫେବୃଆରୀ ମାସ ୩ ତାରିଖ ବେଳକୁ ୟୁରୋପ ଗସ୍ତ ଶେଷ କରି ଓଡ଼ିଶା ଫେରି ଆସିଥିଲେ । ଓଡ଼ିଶାରେ ସେତେବେଳକୁ ସ୍ୱତନ୍ତ୍ରତା ପାଇବାର ଉଲ୍ଲାସ ଚହଟୁଥିଲା । ସେହିବର୍ଷ ଅର୍ଥାତ୍ ୧୯୩୩ ମସିହା ଫେବୃଆରୀ ମାସ ୧୨ ଓ ୧୩ ତାରିଖରେ କଟକର ଶ୍ରୀରାମଚନ୍ଦ୍ର ଭବନ ଠାରେ ଏକ ସମ୍ମିଳନୀର ଆୟୋଜନ କରାଯାଇଥିଲା । ଏହି ସମ୍ମିଳନୀ ଭୁବନାନନ୍ଦ ଦାସଙ୍କ ପ୍ରଚେଷ୍ଟାରେ ହିଁ ଆୟୋଜିତ ହୋଇଥିଲା । ମଧୁସୂଦନ ଦାସ ଏହି ସଭାର ମୁଖ୍ୟ ଆକର୍ଷଣ ଥିଲେ ।

ପ୍ରାୟ ଜାନୁଆରୀ ମାସ ଶେଷ ବେଳକୁ ମଧୁସୂଦନ କଲିକତାରୁ କଟକ ଫେରି ଆସିଥିଲେ । ଦାରୁଣ ପେଟ ଯନ୍ତ୍ରଣା ତାଙ୍କୁ ଦୁର୍ବଳ କରି ପକାଇଥିଲା । ହେଲେ ତାଙ୍କ ମନୋବଳକୁ ଦୋହଲେଇ ପାରି ନ ଥିଲା । ଭୁବନାନନ୍ଦ ଦାସ ସଭାରେ ଅଧକ୍ଷତା କରି ମଧୁସୂଦନଙ୍କୁ ସ୍ୱାଗତ ଜଣାଇଥିଲେ ଏବଂ କହିଥିଲେ—ଦେଶ ମିଶ୍ରଣ ଆନ୍ଦୋଳନର ବହୁ ନେତୃବର୍ଗ ପରଲୋକ ଗମନ କରି ସାରିଥିଲେ ମଧ ଆମର ପରମ ସୌଭାଗ୍ୟ ଯେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନର ଆଦ୍ୟ ପୁରୁଷ ମଧୁସୂଦନ ଆଜି ଆମ ଗହଣରେ ଅଛନ୍ତି । ତାଙ୍କ ମାର୍ଗଦର୍ଶନ ଓ ଅନୁପ୍ରେରଣା ଆଜିର ପିଢ଼ି ପାଇଁ ଏକାନ୍ତ ଆବଶ୍ୟକ ହୋଇ ପଡିଛି ।

୧୯୩୩ ମସିହା ଫେବୃଆରୀ ୧୩ ତାରିଖ ସନ୍ଧ୍ୟାରେ କୁଳବୃଦ୍ଧଙ୍କୁ ସଭାମଞ୍ଚକୁ ନିଆଗଲା । ବୟସାଧିକ୍ୟ ତଥା ବ୍ୟାଧି ଯାତନା ସତ୍ତ୍ୱେ ତାଙ୍କ ମୁଖମଣ୍ଡଳ ବେଶ୍ ଉଜ୍ଜ୍ୱଳ ଓ ଉତ୍ତେଜନାପୂର୍ଣ୍ଣ ଦିଶୁଥିଲା । ସେ ନିରବଚ୍ଛିନ୍ନ ଭାବରେ ଦେଢ଼ଘଣ୍ଟାରୁ ଉର୍ଦ୍ଧ୍ୱକାଳ ଭାଷଣ ଦେଇ କହିଥିଲେ—

'ମୁଁ ଯେତେବେଳେ ଏହି ଆନ୍ଦୋଳନ ଆରମ୍ଭ କଲି ଜାତି(ଓଡ଼ିଆ) ବୋଲି କିଛି ନ ଥିଲା । ମୁଁ ସେତେବେଳେ ସର୍ବତ୍ର ଶୁଷ୍କ କଙ୍କାଳ ଆଉ ଅସ୍ଥିମାନଙ୍କର ସ୍ତୂପୀକୃତ ପାହାଡ଼ମାନଙ୍କୁ ହିଁ ଦେଖୁଥିଲି । କେବଳ ଅସ୍ଥି ଅସ୍ଥି ଅସ୍ଥି, ଆଉ ଅନ୍ୟ କିଛି ନୁହେଁ- କେବଳ ଅସ୍ଥି । ମୋତେ ସେହି ନିର୍ଜୀବ ଅସ୍ଥିକଙ୍କାଳଙ୍କ ମଧରେ ଜୀବନ ସଞ୍ଚାର

କରିବାକୁ ପଡିଥିଲା, ଆଉ ସେହି ଅସ୍ଥିସାର କଙ୍କାଳଙ୍କ ମଧ୍ୟରେ ମୋତେ ମାଂସପେଶୀକୁ ସଂଯୁକ୍ତ କରିବାକୁ ପଡିଲା । ସେହି ଶୀର୍ଣ୍ଣ ହସ୍ତମାନଙ୍କୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବା ସହିତ ସେମାନଙ୍କୁ ଘେନି ମୋତେ ଦୁର୍ଦ୍ଧର୍ଷ ସଂଗ୍ରାମରେ ଅବତୀର୍ଣ୍ଣ ହେବାକୁ ପଡିଲା ।'

ସେ ଭାବ ବିଭୋର ହୋଇ କହିଥିଲେ—'ମୁଁ ଅନେକ ଦିନର ଅନ୍ତରାଳରେ ଏଠାରେ ଦଣ୍ଡାୟମାନ ହୋଇଛି, ଯେତେବେଳେ ମୋର ସୁଦୀର୍ଘ ଦିନର ଅଭିଳଷିତ ଆକାଙ୍କ୍ଷା ପରିପୂର୍ଣ୍ଣତା ଲାଭ କରିବାକୁ ଯାଉଛି । ମୁଁ ଏହି ଦୁଃସାଧ ସଂଗ୍ରାମର ଅୟମାରମ୍ଭ କରିବା ପରେ, ଆମ୍ଭମାନଙ୍କୁ ବହୁ କ୍ଳେଶଯୁକ୍ତ ସମୟ ମଧ୍ୟ ଦେଇ ଗତି କରିବାକୁ ପଡ଼ିଛି । ଥରେ ସହସା ମନରେ ଏକ ଭାବନା ଜାଗ୍ରତ ହେଲା ଯେ ମୋତେ ଈଶ୍ୱର ଓଡ଼ିଶାର ପ୍ରଥମ ଗ୍ରାଜୁଏଟ କରିବାର କାରଣ କ'ଣ ଥାଇପାରେ ? ଏହା ପଛରେ କିଛି ମହତ୍ ଉଦ୍ଦେଶ୍ୟ ନିଶ୍ଚୟ ଅଛି । ସେହି ଉଦ୍ଦେଶ୍ୟ ଆଉ କିଛି ନୁହେଁ, 'ବିଭାଜିତ ଓଡ଼ିଆ ଜାତିର ମିଶ୍ରଣ । ମୋର ଜାତିପାଇଁ ମୋତେ କିଛି କର୍ତ୍ତବ୍ୟ ସମ୍ପାଦନ କରିବାକୁ ପଡିବ । ମାତ୍ର ମୁଁ ସମ୍ପୂର୍ଣ୍ଣ ଏକୁଟିଆ ଥିଲି । ପ୍ରତ୍ୟେକ ଓଡ଼ିଆ ରାଜା ନିଜକୁ ଓଡ଼ିଆ ରୂପେ ପରିଚିତ କରାଇବା ପାଇଁ ଲଜ୍ଜାବୋଧ କରୁଥିଲେ ଆଉ ସ୍କୁଲରେ ଓଡ଼ିଆ ଛାତ୍ରମାନେ ନିଜକୁ ବଙ୍ଗାଳୀ ବୋଲି କହୁଥିଲେ ।

ଏହି ସଭାଗୃହଟି ଯାହାଙ୍କ ନାମରେ ନାମିତ ହୋଇଛି, ସେହି ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ବଙ୍ଗ ପ୍ରଦେଶରେ ବଙ୍ଗାଳୀ ରୂପେ ପ୍ରସିଦ୍ଧି ଲାଭ କରିଥିଲେ । ମୁଁ ତାଙ୍କୁ ଓଡ଼ିଆ ଭାବରେ ପରିଚିତ କରାଇବାକୁ ସଂକଳ୍ପ ନେଇଥିଲି । ମାତ୍ର ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟ ଗଡ଼ଜାତ ରାଜ୍ୟର ଓଡ଼ିଆ ରାଜାମାନଙ୍କୁ 'ଉତ୍କଳ ସମ୍ମିଳନୀ'ରେ ଯୋଗ ନ ଦେବାକୁ ନିର୍ଦ୍ଦେଶ ଦେଇ କହିଥିଲେ- ମିଷ୍ଟର ଦାସଙ୍କ ସଭାରେ କେହି ଯୋଗଦାନ କରନାହିଁ । ତେବେ ଦିନେ ସନ୍ଧ୍ୟା ଆଠଟାରୁ ରାତି ଗୋଟାଏ ପର୍ଯ୍ୟନ୍ତ ତାଙ୍କ ସହିତ ଆଲୋଚନା କରି ତାଙ୍କୁ ବୁଝେଇ ଶୁଝେଇ 'ଉତ୍କଳ ସମ୍ମିଳନୀ'କୁ ଆଣିଥିଲି ଆଉ ସେ ହିଁ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନରେ ସଭାପତିତ୍ୱ କରିଥିଲେ ।

ସେହିଭଳି ଲର୍ଡ କର୍ଜନଙ୍କ ମଧ୍ୟରେ ଓଡ଼ିଶା ପ୍ରତି କିଭଳି ସହାନୁଭୂତି ସୃଷ୍ଟି କରିଥିଲେ ମଧୁସୂଦନ ତାହାର ଏକ ମର୍ମସ୍ପର୍ଶୀ ଚିତ୍ର ପ୍ରଦାନ କରିଥିଲେ । ଲର୍ଡ କର୍ଜନଙ୍କ ସମ୍ବନ୍ଧରେ ମଧୁସୂଦନ କହିଥିଲେ- 'କର୍ଜନ ଜଣେ ଦୃଢ଼ ଏବଂ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତି ଥିଲେ । ତାଙ୍କଠାରେ ସ୍ୱେଚ୍ଛାଚାରିତା ଗୁଣ ଅବଶ୍ୟ ଥିଲା; ଏହା ସତ୍ତ୍ୱେ ତାଙ୍କର ଏକ ସମ୍ବେଦନଶୀଳ ହୃଦୟ ଥିଲା ।'

# ଜାତିପ୍ରାଣ ମଧୁସୂଦନ

ମଧୁସୂଦନଙ୍କ ଉଦ୍ୟମରେ କର୍ଜନ ଓଡ଼ିଶା ପରିଦର୍ଶନରେ ଆସିଥିଲେ । ତାଙ୍କର ସମ୍ମାନାର୍ଥେ ପୁରୀଠାରେ ଏକ ଭବ୍ୟ ଦରବାର ଆୟୋଜିତ ହୋଇଥିଲା । ମାତ୍ର ମଧୁସୂଦନଙ୍କ ପାଇଁ ସେହି ଦରବାରରେ ଆସନ ଖଣ୍ଡିଏ ମଧ ମିଳି ନ ଥିଲା । ଏ ବିଷୟରେ ମଧୁସୂଦନ କହିଥିଲେ- 'ମୋ ପରି ବ୍ୟକ୍ତିଙ୍କ ପାଇଁ ସେଠାରେ ସ୍ଥାନ ନ ଥିଲା । ମାତ୍ର କର୍ଜନ ମୋ ବିଷୟରେ ଅନୁସନ୍ଧାନ କଲେ ଆଉ ପ୍ରଶ୍ନ କଲେ ମିଷ୍ଟର ଦାସ କାହାନ୍ତି ?'

କୁଳବୃଦ୍ଧଙ୍କର ସେଦିନର ଭାଷଣରେ କ'ଣ ଥିଲା କେଜାଣି ତାହା ଲୋକମାନଙ୍କୁ ଅନେକ କ୍ଷଣ ଯାଏ ସ୍ତମ୍ଭୀଭୂତ କରି ଦେଇଥିଲା । ଜାତିର ଦୁଃଖ ଦୁର୍ଦ୍ଦଶାକୁ ନିଜ ଆଖିରେ ଦେଖି ଆସିଥିବା ମଧୁସୂଦନ ଯେମିତି ସେହି ଜାତିର ପରବର୍ତ୍ତୀ ପିଢ଼ିର ସ୍ମୃତିରେ ତାହାକୁ ସାଇତି ରଖିଦେଇଯିବାର ସଂକଳ୍ପ କରିଥିଲେ । ସେଥିଲାଗି ଫେବୃଆରୀ ମାସର କୋହଲା ଶୀତୁଆ ପବନ ତାଙ୍କର ଶରୀରକୁ ଥରେଇ ପାରୁଥିଲା ସିନା, ମନ ଭିତରର ଉତ୍ସାହ ଉଦ୍ଦୀପନାକୁ ଟିକିଏ ବି ଶୀତଳ କରି ପାରୁ ନ ଥିଲା । ସେ କହି ଚାଲୁଥିଲେ ଏବଂ କହି ଚାଲୁଥିଲେ । ସତେ ଯେମିତି ସେ ଜାଣି ପାରିଥିଲେ, ଏହାପରେ ତାଙ୍କୁ ତାଙ୍କର ପ୍ରିୟ ଓଡ଼ିଆମାନଙ୍କ ସମ୍ମୁଖକୁ ଆସିବା ପାଇଁ ଭାଗ୍ୟ ଆଉ ସୁଯୋଗ୍ ଦେବ ନାହିଁ କି ସେ ଗୋଟିଏ ଜାତିର ଅଙ୍ଗେନିଭା ଇତିହାସକୁ ପରବର୍ତ୍ତୀ ପିଢ଼ି ପାଇଁ ସାଇତି ରଖି ପାରିବେ ନାହିଁ । ସେଇଥିପାଇଁ ସେ କହି ପକାଇଥିଲେ– 'ମୁଁ ଏହି ମହାନ୍ ଜାତୀୟ ସମାବେଶରେ ଅଦ୍ଭୁତ ପୋଷାକ ପିନ୍ଧି ଦଣ୍ଡାୟମାନ ହୋଇଛି । ମୁଁ ସମସ୍ତଙ୍କ ମଧ୍ୟରେ ଅତୀବ ବୃଦ୍ଧ । ଶୀତ ପ୍ରକୋପରୁ ରକ୍ଷା ପାଇବା ପାଇଁ ମୋତେ ନିଜକୁ ଉଷ୍ମ ରଖିବାକୁ ପଡୁଛି । ମୋତେ ଦିନକୁ ତିନିଥର ଇଲେକ୍ଟ୍ରିକ୍ ଉତ୍ତାପ ନେବାକୁ ହେଉଛି । ଅନ୍ୟଥା ଦଣ୍ଡାୟମାନ ହୋଇ ରହିବା ମୋ ପକ୍ଷେ ସମ୍ଭବପର ହୋଇ ନ ଥାନ୍ତା ।'

ଦୀର୍ଘ ଦେଢ଼ଘଣ୍ଟା କାଳ ଅବିରାମ ଗତିରେ ଭାଷଣ ଦେଇ ସାରିବା ପରେ ନିଜର ବକ୍ତବ୍ୟ ଶେଷ କରିବାକୁ ଯାଇ ମଧୁସୂଦନ କହିଥିଲେ- 'ବୋଧହୁଏ ସଳ୍ପ କେତେକ ଦୀର୍ଘଜୀବୀ ଓଡ଼ିଆଙ୍କ ମଧ୍ୟରେ ମୁଁ ଅନ୍ୟତମ । ଜୀବନର ଅନ୍ତିମ ବେଳାରେ ମୁଁ ଗୋଟିଏ ମାତ୍ର ଶ୍ରେୟସ୍କର ବଚନ ଶୁଣାଉଛି- ଭଗବାନଙ୍କ ସହିତ ସମନ୍ୱିତ ହୁଅ । କର୍ତ୍ତବ୍ୟର ଆହ୍ୱାନରେ ସଂଗ୍ରାମ କରିଚାଲ । ଅନ୍ୟ ଜାତିମାନଙ୍କୁ ସାହାଯ୍ୟ କରିବାକୁ ତତ୍ପର ହୁଅ । ପୁଣି ସେହିଦିନ ଆସିବ, ଯେତେବେଳେ ତୁମ୍ଭମାନଙ୍କୁ କର୍ତ୍ତବ୍ୟ

ସମ୍ପାଦନର ହିସାବ ପ୍ରଦାନ କରିବାକୁ ପଡିବ । ତୁମେ ଯଦି ଜଗତର ମଙ୍ଗଳ ସାଧନ କରିଥାଅ, ସେହି ବିଧାତା ପୁରୁଷ ଆସି କହିବେ, ହେ ମୋର ସନ୍ତାନ, ମୋର ସମୀପକୁ ଆସ । ମୁଁ ତୁମକୁ ଜୀବନର ମହିମାମଣ୍ଡିତ ମୁକୁଟ ପିନ୍ଧେଇ ଦେବି ।'

୧୯୩୩ ମସିହା ଫେବୃଆରୀ ମାସର ୧୩ ତାରିଖରେ ମଧୁସୂଦନଙ୍କ ପ୍ରଦତ୍ତ ଭାଷଣର ଏହା ଶେଷ ପଙ୍କ୍ତି ଥିଲା । ସେତିକି ନୁହେଁ, ଏହା ବି ଜାତି ଉଦ୍ଦେଶ୍ୟରେ ମଧୁସୂଦନଙ୍କର ଶେଷକଥା ଥିଲା । ତେବେ ଦୁଃଖର ସହିତ ଏକଥା କହିବା ପାଇଁ ପଡୁଛି ଯେ, କୁଳବୃଦ୍ଧଙ୍କର ଗୋଟିଏ ବି କଥାକୁ ଆନ୍ତରିକତାର ସହିତ ଏ ଓଡ଼ିଆ ଜାତି ପାଳନ କରିନାହିଁ !

## ଶତାବ୍ଦୀର ସୂର୍ଯ୍ୟ ବୁଡ଼ିଗଲା

୧୯୩୪ ମସିହା ଓଡ଼ିଶା ଏବଂ ଓଡ଼ିଶାବାସୀଙ୍କ ପାଇଁ ଏକ ଦାରୁଣ ବିପର୍ଯ୍ୟୟର ବର୍ଷ ଥିଲା । ପ୍ରଥମରୁ ବିପତ୍ତି, ବିପର୍ଯ୍ୟୟ, ଦୁର୍ଯୋଗ ଆଉ ଅଶୁଭ ମୁହୂର୍ତ୍ତ ସବୁ ସ୍ପଷ୍ଟ ହୋଇ ଉଠିଥିଲା । ଏହିବର୍ଷ ଜାନୁଆରୀ ମାସ ଆରମ୍ଭ ହେଉ ହେଉ ମଧୁସୂଦନଙ୍କର ସ୍ୱାସ୍ଥ୍ୟାବସ୍ଥାରେ ଅବନତି ପରିଲକ୍ଷିତ ହେଲା । ଜାନୁଆରୀ ୧୨ ତାରିଖ ଦିନ ସେ କଟକରେ ଥିବା ତାଙ୍କ କୋଠିର ଛାତ ଉପରେ ବୁଲୁଥିଲେ । ହଠାତ୍ କ'ଣ ମନକୁ ଆସିଲା କେଜାଣି ସେ କହି ପକେଇଲେ- 'ମୋର ମନେ ହେଉଛି ପ୍ରାୟ ପନ୍ଦର ଦିନ ପରେ ମୁଁ ମରିଯିବି' ।

ଏହି ଘଟଣାର ତିନିଦିନ ପରେ ଅର୍ଥାତ୍ ୧୯୩୪ ମସିହା ଜାନୁଆରୀ ମାସ ୧୫ ତାରିଖ ଦିନ ବିହାରରେ ଏକ ଭୟଙ୍କର ଭୂମିକମ୍ପ ଘଟିଗଲା । ସେତେବେଳେ ବିହାର-ଓଡ଼ିଶା ଏକ ପ୍ରଦେଶ ଥିଲା । ଭୂମିକମ୍ପର ତୀବ୍ରତା ଏତେ ଅଧିକ ଥିଲା ଯେ, ସେଥିରେ ମଧୁସୂଦନ ଶୋଇଥିବା ଖଟଟି ବି ଦୋହଲିଗଲା । ତାଙ୍କର ବିଶ୍ୱସ୍ତ ଭୃତ୍ୟ ହାଡ଼ିବନ୍ଧୁ ଏହା ଦେଖି ତାଙ୍କୁ ତୁରନ୍ତ ଘରୁ ଛାତ ଉପରକୁ ନେଇଗଲା । ଭୂମିକମ୍ପର ଭୟାବହତା ବିଷୟରେ ଶୁଣି ସେ ଦୁଃଖରେ ମ୍ରିୟମାଣ ହୋଇ ପଡିଲେ । ବେଦନା ବିଜଡ଼ିତ କଣ୍ଠରେ କହୁଥିଲେ- ଘରଟି ମୋ ଉପରେ ପଡିଗଲେ ତ ହେଲା !

ଶୁଣାଯାଏ, ଏହାର କିଛିଦିନ ପରେ ଓଡ଼ିଶାରେ ଆଉ ଏକ ଅଶୁଭ ସଙ୍କେତ ଦେଖିବାକୁ ମିଳିଥିଲା । ଶ୍ରୀମନ୍ଦିରରେ ବଡ଼ଠାକୁର ତାଙ୍କର ଆସ୍ଥାନ ଉପରୁ ତଳକୁ ଖସି ପଡିଲେ । ସମଗ୍ର ଓଡ଼ିଆ ଜାତି ପାଇଁ ଏହାଠାରୁ ବଳି ବଡ଼ ଅଶୁଭ ସଙ୍କେତ

ଆଉ କ'ଣ ହେଇପାରିଥାନ୍ତା ? ରୋମ୍ ସାମ୍ରାଜ୍ୟର ଅଧୀଶ୍ୱର ଜୁଲିଅସ୍ ସିଜରଙ୍କ ମୃତ୍ୟୁକାଳ ପୂର୍ବରୁ ପ୍ରାକୃତିକ ବିପ୍ଳାତ ପରି ଏହା ଯେପରି ସୂଚାଇ ଦେଉଥିଲା ଯେ ଓଡ଼ିଶାବାସୀଙ୍କ ପାଇଁ ଏକ ଖୁବ୍ ବଡ ବିପତ୍ତି ଘନେଇ ଆସୁଛି ।

ଜାନୁଆରୀ ୨୫ ତାରିଖ ଦିନ ମଧୁସୂଦନଙ୍କୁ ଗାଧୋଇବାକୁ ନିଆଯାଉଥିବା ବେଳେ ସେ ସଂଜ୍ଞାହୀନ ହୋଇଗଲେ । ଏହି ଖବର ବିଜୁଳି ବେଗରେ ଚାରି ଆଡକୁ ବ୍ୟାପିଗଲା । ଲୋକମାନେ ଯାତ୍ରାସ୍ଥଳକୁ ଧାଇଁବା ପରି ତାଙ୍କ କୋଠି ଆଡକୁ ଧାଇଁବାକୁ ଲାଗିଲେ । ତେବେ ପ୍ରାୟ ଚାରି ପାଞ୍ଚ ମିନିଟ ପରେ ସେ ସଂଜ୍ଞା ଫେରି ପାଇଲେ । ହେଲେ ସେହି ଦିନ ଠାରୁ ତାଙ୍କର ସ୍ୱାସ୍ଥ୍ୟାବସ୍ଥାରେ ଆଉ ଉନ୍ନତି ଘଟିଲା ନାହିଁ । ସେ ଶଯ୍ୟାଶାୟୀ ହୋଇଗଲେ ।

ସୁଧାଂଶୁବାଳାଙ୍କ ଠାରୁ ତାର ବାର୍ତ୍ତା ପାଇ ଶୈଳବାଳା ପାଟଣାରୁ ଆସି କଟକରେ ପହଞ୍ଚିଲେ । ତାଙ୍କୁ ଦେଖି ମଧୁସୂଦନ କହିଲେ- ମୋର ବାହୁଡ଼ାଣି ବେଳ ଆସି ଉପସ୍ଥିତ ହେଲାଣି । ତୁମେ ଆସି ନ ଥିଲେ ମୋତେ ପାଟଣା ଯାଇ ବିଦାୟ ନେବାକୁ ପଡ଼ିଥାନ୍ତା । ଭୂମିକମ୍ପ କ୍ଷତିଗ୍ରସ୍ତ ଅଞ୍ଚଳରେ କିଛି ସେବା କାର୍ଯ୍ୟ କରିବାକୁ ହୋଇଥାନ୍ତା । ତାହା ଥିଲା ମୋ ପାଇଁ ଅନିବାର୍ଯ୍ୟ କର୍ତ୍ତବ୍ୟ, ଯାହା ପାଳନ ନ କରିବା ମୋ ପାଇଁ ହୋଇଥାନ୍ତା ଅକୃତଜ୍ଞତା ।

ଜାନୁଆରୀ ୩୧ ତାରିଖ ସକାଳ । ମଧୁସୂଦନଙ୍କର ଦେହ ଟିକିଏ ଅଧିକ ଅସୁସ୍ଥ ହୋଇ ପଡିଲା । ସେ ଖୁବ୍ ଦୁର୍ବଳତ ଅନୁଭବ କରୁଥିଲେ । ସବୁବେଳେ କିଛି ନା କିଛି ଲୋକ ଆସି ତାଙ୍କର ସ୍ୱାସ୍ଥ୍ୟାବସ୍ଥା ସମ୍ପର୍କରେ ପଚାରି ବୁଝୁଥିଲେ । ମହିଳାମାନେ ସେମାନଙ୍କର ପିଲାମାନଙ୍କୁ ଆଣି ମଧୁସୂଦନଙ୍କର ପାଦ ଛୁଆଁଇ ଆଶୀର୍ବାଦ ନେଇ ଯାଉଥିଲେ । ମଧୁସୂଦନ ସମସ୍ତଙ୍କୁ ଗୋଟିଏ କଥା କହୁଥିଲେ- ମୋ ହାତରେ ଆଉ କ'ଣ ଅଛି ? ସବୁ ତାଙ୍କରି ନିର୍ଦ୍ଦେଶ ।

ଦିନ ପ୍ରାୟ ୧୧ଟା । ମଧୁସୂଦନଙ୍କ ପାଖରେ ତାଙ୍କର ପାଳିତା କନ୍ୟା ଶୈଳବାଳା ବସିଥାନ୍ତି । ଡାକବାଲା ଆସି ଖଣ୍ଡିଏ ରେଜେଷ୍ଟ୍ରି ଚିଠି ଦେଇଗଲା । ଚିଠିଟି ଖୋଲି ଶୈଳବାଳା ମଧୁସୂଦନଙ୍କ ହାତକୁ ବଢ଼େଇ ଦେଲେ । ମଧୁସୂଦନ ତନ୍ନତନ୍ନ କରି ଚିଠିଟିକୁ ପଢ଼ିଲେ । ତାଙ୍କ ଓଠରେ ହସ ଖେଳିଗଲା । ଚିଠି ସହିତ ସେଥିରେ ଏକ ହଜାର ଟଙ୍କାର ଏକ ଡ୍ରାଫ୍ଟ ଥିଲା । ଜଣେ ମହକିଲ ବାକି ରହି ଯାଇଥିବା ପାଉଣା ବାବଦକୁ ମଧୁସୂଦନଙ୍କ ନିକଟକୁ ଏହି ଟଙ୍କା ପଠେଇଥିଲେ ।

ଏହି ଘଟଣାର କିଛି ଦିନ ପୂର୍ବେ ମଧୁସୂଦନ କେଉଟ ବସ୍ତିରେ ଟ୍ୟୁବ୍‌ୱେଲଟିଏ ଖୋଲେଇବା ନିମନ୍ତେ ସେମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ମାତ୍ର କେମିତି ତାହା ପୂରଣ ହେବ, ତାହାକୁ ନେଇ ଚିନ୍ତିତ ରହୁଥିଲେ । ଯେତେବେଳେ ତାଙ୍କୁ ଟଙ୍କା ମିଳିଗଲା ସେତେବେଳେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଭାବିଲେ- ଶେଷ ପ୍ରତିଶ୍ରୁତିଟିକୁ ପୂରଣ କରି ସେ ଶାନ୍ତିରେ ଆଖି ବୁଜି ପାରିବେ । ଶୈଳବାଳାଙ୍କୁ କହିଲେ- ମୋ ମନକଥା ବୁଝି ପାରି କରୁଣାମୟ ପରମପିତା ମୋ ପାଖକୁ ଟଙ୍କା ପଠାଇଛନ୍ତି । ତୁମେ ତୁରନ୍ତ ମ୍ୟୁନିସ ପାଲିଟି ଚେୟାରମ୍ୟାନ୍ ଭାଗୀରଥି ମହାପାତ୍ରଙ୍କୁ ଡକେଇ ଏହି ଟଙ୍କାଟା ତାଙ୍କୁ ଦେଇଦିଅ । ତାହା ହିଁ ହେଲା । ଭାଗୀରଥି ମହାପାତ୍ରଙ୍କୁ କେଉଟ ବସ୍ତିରେ ଟ୍ୟୁବ୍‌ୱେଲ ଖୋଳିବା ପାଇଁ ଟଙ୍କା ଦେଇ ସେ ତାଙ୍କ ଶେଷ ପ୍ରତିଶ୍ରୁତିର ଦାୟରୁ ମୁକ୍ତ ହୋଇଗଲେ ।

ସେଦିନ ସନ୍ଧ୍ୟାରେ ମଧୁସୂଦନଙ୍କର ଅବସ୍ଥା ଖୁବ୍ ସଙ୍କଟାପନ୍ନ ହୋଇ ପଡ଼ିଲା । ଛାତିରେ କଫ ଘଡ଼ଘଡ଼ ହେଉଥିଲା । ସୁଧାଂଶୁବାଳା ଧର୍ମ ସଂଗୀତ ଗାଇବାକୁ ଆରମ୍ଭ କଲେ—

"I heard the voice of Jesus say
come unto me and rest
Lay down thou weary one, lay down
the head upon my breast."

ଅର୍ଥାତ୍, 'ମୁଁ ଯୀଶୁଙ୍କର ବାଣୀ ଶୁଣିଲି । ସେ କହୁଛନ୍ତି- ମୋର ସମୀପକୁ ଆସ ଆଉ ବିଶ୍ରାମ ନିଅ । ହେ ଶ୍ରାନ୍ତ ମାନବ ! ତୁମର ଶିର ମୋ ବକ୍ଷସ୍ଥଳରେ ସ୍ଥାପନ କର ।'

ପୁଣି ସୁଧାଂଶୁବାଳା ଆରମ୍ଭ କଲେ ଆଉ ଏକ ପଙ୍‌କ୍ତି—

"Abide with me, fast falls the even tide
the darkness deepens
Lord with me abide
when other helpers fail and comforts fail
Help of the hepless abide with me."

'ମୋ ପାଖରେ ଆଶ୍ରିତ ହୁଅ । ସନ୍ଧ୍ୟାର ଲହରୀ ତ୍ୱରିତ ଗତିରେ ଭାଙ୍ଗିଭାଙ୍ଗି ଯାଉଛି । ଅନ୍ଧାର ଗାଢ଼ ଆଉ ନିବିଡ଼ ହୋଇ ଉଠୁଛି । ହେ ପ୍ରଭୁ ! ମୋର ସମୀପରେ

ଅବସ୍ଥାନ କର । ଯେତେବେଳେ ଅନ୍ୟ ସାହାଯ୍ୟକାରୀମାନେ ହାରି ଯାଆନ୍ତି ଆଉ ଆରାମଦାୟକ ଶାନ୍ତି ଅପସୃତ ହୁଏ, ହେ ପ୍ରଭୁ ! ନିଃସହାୟ ଓ ଆଶ୍ରୟହୀନ ବ୍ୟକ୍ତିମାନଙ୍କୁ ସାହାଯ୍ୟ କର । ଆଉ ମୋର ସମୀପରେ ଅବସ୍ଥାନ କର ।'

ତେବେ ସୁଧାଂଶୁବାଳା ଯେତେବେଳେ ଏହାର ପରପଦ ଗାଇବାକୁ ଆରମ୍ଭ କଲେ ସେତେବେଳେ ମଧୁସୂଦନ ତାଙ୍କୁ ହାତ ହଲେଇ ଗାଇବାକୁ ମନା କଲେ । କହିଲେ- ଡେଭିଡଙ୍କର ଦୁଃଖ ତ ମୋର ନ ଥିଲା । ପରମପିତା ଈଶ୍ୱରଙ୍କର ଦୟା ମୋ ପ୍ରତି ଅସୀମ ।

ରୋଗଶଯ୍ୟାରେ ଶୋଇ ଶେଷ ନିଃଶ୍ୱାସକୁ ଅପେକ୍ଷା କରିଥାଇ ବି ମଧୁସୂଦନ ଜାତି ବିଷୟ ଚିନ୍ତା କରିବାରୁ ବିରତ ହୋଇ ନ ଥିଲେ । ଫେବୃଆରୀ ମାସର ୧ ତାରିଖ ଅପରାହ୍ନ । ସନ୍ଧ୍ୟା ହେବାକୁ ଅଳ୍ପ କିଛି ସମୟ ବାକିଥାଏ । ତାଙ୍କର ସଙ୍କଟାପନ୍ନ ଅବସ୍ଥା କଥା ଶୁଣି ପଣ୍ଡିତ ନୀଳକଣ୍ଠ ଦାସ ଆସି ତାଙ୍କ ନିକଟରେ ପହଞ୍ଚିଥାନ୍ତି । ତାଙ୍କ ସାଥିରେ ବ୍ରଜ ସୁନ୍ଦର, ଲକ୍ଷ୍ମୀଧର ମହାନ୍ତି, ବିଚିତ୍ରାନନ୍ଦ ଦାସ ପ୍ରମୁଖ ଥାଆନ୍ତି । ନୀଳକଣ୍ଠ ମଧୁସୂଦନଙ୍କୁ ପଚାରିଲେ—'ଜୟପୁର ଇଷ୍ଟେଟ୍ ଓ ଗଞ୍ଜାମ ଏଜେନ୍ସି ଏରିଆ ଆଦି ଅଞ୍ଚଳକୁ 'ଓଡ଼ିଶା କମିଟି' ଓଡ଼ିଶା ପ୍ରଦେଶରୁ ବାଦ ଦେବା ଲାଗି ସୁପାରିଶ କରିଛି । ସେ ବିଷୟରେ କ'ଣ କରାଯିବ ? ସେସବୁ ଅଞ୍ଚଳ କ'ଣ ଓଡ଼ିଶା ସହିତ ମିଶିବ ?' କ୍ଷୀଣ କଣ୍ଠରେ ମଧୁସୂଦନ ଜବାବ ଦେଲେ- 'ନିଶ୍ଚୟ ମିଶବ । ସେଥିରେ ତିଳେ ବି ସନ୍ଦେହ ନାହିଁ । କିନ୍ତୁ ନୀଳକଣ୍ଠ, ମୁଁ ଜାଣିବାକୁ ଚାହେଁ, ଦେଶ ଓ ଦଶର ମୁଖ ଉଜ୍ଜ୍ୱଳ କରିବା ପରି ଦେଶପ୍ରାଣ ଓଡ଼ିଆ ଲୋକଙ୍କର ଅଭାବ ଓଡ଼ିଶାରେ ଦେଖା ଦେବ ନାହିଁ ତ ?'

ବାସ୍ତବରେ ତାଙ୍କର ଅନ୍ତିମ ସମୟ ଯେତେ ପାଖେଇ ଆସୁଥିଲା, ଓଡ଼ିଶାକୁ ନେଇ ତାଙ୍କ ଭିତରେ ଚିନ୍ତା ସେତେ ଅଧିକ ହେଉଥିଲା । ଓଡ଼ିଶା ବିଷୟ ବୁଝିବ କିଏ ? ଓଡ଼ିଶା ପ୍ରଦେଶ ଗଠନ ଦାୟିତ୍ୱ ଗ୍ରହଣ କରିବ କିଏ ?- ମଧୁସୂଦନ ଏଇ କଥା ହିଁ ଚିନ୍ତା କରୁଥିଲେ । ପୂର୍ବରୁ ଓଡ଼ିଶାର କଂଗ୍ରେସ ନେତା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କୁ ସେ ତାଙ୍କର ବାସ୍ତବ ଉତ୍ତରାଧିକାରୀ ବୋଲି ବିବେଚନା କରୁଥିଲେ । ଗୋପବନ୍ଧୁ ବି ତାଙ୍କୁ ଗୁରୁ ବୋଲି ମାନୁଥିଲେ । ମାତ୍ର ଦୁର୍ଭାଗ୍ୟର ବିଷୟ ୧୯୨୮ ମସିହାରେ ଗୋପବନ୍ଧୁଙ୍କର ଦେହାନ୍ତ ହୋଇ ଯାଇଥିଲା । ଏହାପରେ ମଧୁସୂଦନ ପଣ୍ଡିତ ନୀଳକଣ୍ଠଙ୍କୁ ହିଁ ନିଜର ଉତ୍ତରାଧିକାରୀ ବୋଲି ମନେ କରୁଥିଲେ । ସେଥିଲାଗି

ସେ ଅତ୍ୟନ୍ତ ତୃପ୍ତ ନୟନରେ ନୀଳକଣ୍ଠଙ୍କୁ ଚାହିଁ ରହି ଏଭଳି କଥା ସବୁ କହି ଚାଲୁଥିଲେ । ନୀଳକଣ୍ଠ ପଚାରିଲେ—'ଓଡ଼ିଶାବାସୀଙ୍କ ପ୍ରତି ତାଙ୍କର କିଛି ବାର୍ତ୍ତା ଅଛି କି ?' ସାମାନ୍ୟ ଆଖି ଖୋଲି ମଧୁସୂଦନ କହିଲେ—'ଓଡ଼ିଶାର ନିର୍ମଳ ଲୋକମାନଙ୍କୁ କହିବ ଯେ ସେମାନେ ସବୁବେଳେ ସେମାନଙ୍କ ଅନ୍ତରକୁ ନିର୍ମଳ ରଖିବେ । ତାହାହେଲେ ସେମାନଙ୍କର ଅନ୍ତରାତ୍ମା ପବିତ୍ର ରହିବ ।'

ଏହିଦିନ ଡାକ୍ତର ତାଙ୍କୁ ପରୀକ୍ଷା କରିବା ବେଳେ ମଧୁସୂଦନ ପରିହାସ କରି କହିଲେ- ଦେଖୁଛନ୍ତି ଆଉ କେତେଦିନ ବଞ୍ଚିବି ? ଡାକ୍ତରବାବୁ କୌଣସି ଉତ୍ତର ଦେବା ପୂର୍ବରୁ ମଧୁବାବୁ ହସିହସି କହିଲେ-

"There is no hope the sickman said
The silent doctor shook his head."

ଅର୍ଥାତ୍, ରୋଗୀ କହିଲା ଯେ, ଆଉ ଆଶା ନାହିଁ । ମନ ଭୁଲାଣିଆ ଡାକ୍ତର କେବଳ ମୁଣ୍ଡ ହଲେଇଲେ ।

ଫେବୃଆରୀ ୩ ତାରିଖ ସନ୍ଧ୍ୟା ପର୍ଯ୍ୟନ୍ତ ମଧୁସୂଦନଙ୍କ ସ୍ୱାସ୍ଥ୍ୟାବସ୍ଥା ଆପାତତଃ ଭଲ ଥିଲା । ସମସ୍ତେ ଭାବି ନେଇଥିଲେ ଯେ ମଧୁସୂଦନ ଘାଟି ପାର ହୋଇଗଲେ । ସେହିଦିନ ସନ୍ଧ୍ୟା ପ୍ରାୟ ସାତଟା ବେଳେ ମହିଳା ସଂଘ ପକ୍ଷରୁ ସାହାଯ୍ୟ ସଂଗ୍ରହ ଅଭିଯାନ ସଭା ଅନୁଷ୍ଠିତ ହେଉଥିଲା । ମଧୁସୂଦନ ଶୈଳବାଳା ଓ ସୁଧାଂଶୁବାଳାଙ୍କୁ ସେହି ସଭାରେ ଯୋଗ ଦେଇ ସର୍ବୋଚ୍ଚ ପରିମାଣର ସାହାଯ୍ୟ ସଂଗ୍ରହ କରିବା ନିମନ୍ତେ ନିର୍ଦ୍ଦେଶ ଦେଇଥିଲେ । ସେତିକି ନୁହେଁ, ନିଜ ତକିଆ ତଳେ ଯାହା ସ୍ୱଳ୍ପ ଅର୍ଥ ଗଚ୍ଛିତ କରି ରଖିଥିଲେ ତାହାକୁ ମଧ୍ୟ ସେ ସେମାନଙ୍କୁ ଦେଇଦେଲେ । ଏହାପରେ ମଧୁସୂଦନ ସମ୍ପୂର୍ଣ୍ଣ ଭାବରେ ନିଃସ୍ୱ ହୋଇଗଲେ । ତାଙ୍କର ହୋଇ ଆଉ କିଛି ବି ରହିଲା ନାହିଁ । ସମ୍ଭବତଃ ସେ ଭାବୁଥିଲେ, ତାଙ୍କର ବାହୁଡିଯିବା ବାଟରେ ଆଉ କୌଣସି ଅନ୍ତରାୟ ନାହିଁ ।

ରାତି ଆଠଟା ବେଳକୁ ମଧୁସୂଦନଙ୍କ ଅବସ୍ଥା ପୁଣିଥରେ ସଂକଟାପନ୍ନ ହୋଇ ପଡ଼ିଲା । ଶୈଳବାଳା ବି ସଭାରୁ ଫେରି ଆସିଥିଲେ ଏବଂ ମଧୁସୂଦନଙ୍କର ଅସାଭାବିକ ଅବସ୍ଥା ବିଷୟରେ ଜାଣି ପାରିଲେ । ଡେରି ନ କରି ସ୍ଥିତି ସମ୍ପର୍କରେ ସେ ସମସ୍ତଙ୍କୁ ତୁରନ୍ତ ଅବଗତ କରାଇଦେଲେ । ରାତି ୧୦ଟା ବେଳକୁ ମଧୁସ୍ମୃତି ଲୋକାରଣ୍ୟ ହୋଇ ପଡିଥିଲା । ଆତ୍ମୀୟଙ୍କ ବ୍ୟତୀତ ଡାକ୍ତର ଜୟନ୍ତ ରାଓ, ଡାକ୍ତର ଅଟଳ ବିହାରୀ

ଆଚାର୍ଯ୍ୟ, ଡାକ୍ତର ବିଭୂତି ଭୂଷଣ ପଟ୍ଟନାୟକ, ବ୍ରଜସୁନ୍ଦର ଦାସ, ଏନ.କେ.ରାୟ, ଶ୍ରୀମତୀ ବସନ୍ତ କୁମାରୀ ଦେବୀ, ଶ୍ରୀମତୀ ରମା ଦେବୀ, ଶ୍ରୀମତୀ ସରଳା ଦେବୀ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଲକ୍ଷ୍ମୀଧର ମହାନ୍ତି, ଚିନ୍ତାମଣି ଆଚାର୍ଯ୍ୟ, ପି.ସି.ବୋଷ, ଗୁଣନିଧି ମହାନ୍ତି ପ୍ରମୁଖ ମଧୁସୂଦନଙ୍କୁ ଜଗି ରହିଲେ । ମଧୁସୂଦନଙ୍କ ମୁଖମଣ୍ଡଳରୁ ଏକ ଅପୂର୍ବ ଜ୍ୟୋତି ବାହାରୁଥାଏ । ଧର୍ମଯାଜକ ଉଦାତ୍ତ କଣ୍ଠରେ ପ୍ରାର୍ଥନା ଆବୃତ୍ତି କରୁଥାନ୍ତି—

"I heard the voice of Jesus say
come unto me and rest
Lay down thou weary one, lay down
the head upon my breast."

ରାତି ୧୧ଟା ଠାରୁ ମଧୁସୂଦନଙ୍କ ପାଟିରେ ଶୈଳବାଳା ଚାମୁଚେ ଲେଖାଏଁ ଜଳ ଦେଉଥିଲେ । ମଧୁସୂଦନ ମଧ ତାହାକୁ ଆନନ୍ଦର ସହିତ ଗ୍ରହଣ କରୁଥିଲେ । ସମବେତ ଜନତାଙ୍କ ମଧରେ ଶୋକର, ଆଶଙ୍କାର ବାତାବରଣ ଖେଳି ଯାଇଥିଲା । ସେମାନଙ୍କର ଅତି ଆଦରର କୁଳବୃଦ୍ଧଙ୍କୁ ଜୀବିତ ରଖିବା ପାଇଁ ସମସ୍ତେ ଯେମିତି ଏକମନରେ ପ୍ରାର୍ଥନା କରୁଥିଲେ । ଫେବୃଆରୀ ୩ ତାରିଖର ରାତି ୧୨ଟା ଅତିକ୍ରମ କରିଗଲା । ତନ୍ମୟ ହୋଇ ମଧୁସୂଦନ ପ୍ରାର୍ଥନା ଶୁଣୁଥିଲେ—'ମୁଁ ଯୀଶୁଙ୍କର ବାଣୀ ଶୁଣିଲି । ସେ କହୁଛନ୍ତି—ମୋର ସମୀପକୁ ଆସ ଆଉ ବିଶ୍ରାମ ନିଅ । ହେ ଶ୍ରାନ୍ତ ମାନବ ! ତୁମର ଶିର ମୋ ବକ୍ଷସ୍ଥଳରେ ସ୍ଥାପନ କର ।' ରାତି ଗୋଟାଏ ୧୫ ମିନିଟ ବେଳକୁ ନିଃଶ୍ୱାସ ଜୋରରେ ଚାଲିଲା । ନାଡ଼ିର ଗତି କ୍ରମଶଃ ଧୀର ହୋଇ ଆସିଲା । ଶରୀର ଶିଥିଳ ହୋଇଗଲା । ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖ ରାତି ଗୋଟାଏ ୨୦ ମିନିଟ ବେଳକୁ ସବୁକିଛି ସ୍ଥିର ହୋଇଗଲା । ଓଡ଼ିଶାର କୁଳବୃଦ୍ଧ ଓଡ଼ିଶାକୁ ଛାଡି ଈଶ୍ୱରଙ୍କ ରାଜ୍ୟକୁ ବାହୁଡ଼ିଗଲେ । ଶତାବ୍ଦୀର ଉତ୍ତୁଙ୍ଗ ଶୃଙ୍ଗଟିଏ ଟଳି ପଡିଲା । ଗୋଟିଏ ଶତାବ୍ଦୀ ତା' ଇଚ୍ଛାରେ ଶେଷ ହୋଇଗଲା । ସେତେବେଳକୁ ମଧୁସୂଦନଙ୍କୁ ୮୫ ବର୍ଷ, ୬ ମାସ ଓ ୮ ଦିନ ହୋଇଥିଲା ।

ବାହୁଡ଼ି ଯିବାର ଠିକ୍ ଦୁଇବର୍ଷ ପରେ ଅର୍ଥାତ୍ ୧୯୩୬ ମସିହା ଏପ୍ରିଲ ମାସ ୧ ତାରିଖ ଦିନ ତାଙ୍କର ଜୀବନବ୍ୟାପୀ ସଂଗ୍ରାମର ଫଳ ଓଡ଼ିଶାବାସୀଙ୍କୁ ମିଳିଲା—ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ମାତ୍ର ହାୟ, ଏହି ମହାର୍ଘ ମୁହୂର୍ତ୍ତରେ ସାମିଲ୍ ହେବାକୁ ମଧୁସୂଦନ ଅପେକ୍ଷା କରି ରହି ନ ଥିଲେ ।

୧୯୩୪ ମସିହା ଫେବୃଆରୀ ୪ ତାରିଖ ପ୍ରାୟ ଅପରାହ୍ଣ ବେଳକୁ ଏକ ବିରାଟ ପଟୁଆରରେ ମଧୁସୂଦନଙ୍କୁ 'ଗୋରା କବର'କୁ ନିଆଗଲା । ଚାରିଆଡୁ ଶୁଭୁଥିଲା ତାଙ୍କ ରଚିତ ଅମର ସଂଗୀତ ଧ୍ୱନି—'ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର ସ୍ୱାର୍ଥକୁ ଦିଅ ଆହୁତି, ସ୍ୱାର୍ଥମେଧ ଯଜ୍ଞେ ଚାରିଆଡେ ନାଚ ଛାତିକୁ ମିଶାଇ ଛାତି ।'

ଖ୍ରୀଷ୍ଟୀୟ ରୀତିରେ ସନ୍ଧ୍ୟା ପୂର୍ବରୁ ଶବକୁ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା କଳା-କଫିନ୍ ଭିତରେ ଶୁଆଇ ଦିଆଗଲା । ଶୋକାକୁଳ ଅନ୍ତରରେ ଓଡ଼ିଶାବାସୀ ତାଙ୍କୁ ବିଦାୟ ଦେଲେ ସେଇ ମୁହୂର୍ତ୍ତରେ । କ୍ଷଣକ ଭିତରେ ମଧୁସୂଦନ କଫିନ୍ ଭିତରେ ଲୁଚିଗଲେ । ହେଲେ ସେ ପ୍ରତିଟି ଓଡ଼ିଆଙ୍କ ଅନ୍ତର ଭିତରେ ବଞ୍ଚି ରହିଛନ୍ତି ଅମର ହୋଇ - ଚିରଦିନ ପାଇଁ ।

ସତେଯେମିତି ମଧୁସୂଦନ ପ୍ରମାଣ କରି ଦେଇଗଲେ—ମୃତ୍ୟୁ ସମସ୍ତଙ୍କୁ ନିଜ ଅଧୀନକୁ ନେଇଯାଏ, ଏକଥା ସତ; ହେଲେ କାହାରି କାହାରି ନିକଟରେ ମୃତ୍ୟୁ ବି ଅଧୀନସ୍ଥ ହୋଇଯାଏ । ସେମିତି ଏକ କାଳଜୟୀ ବ୍ୟକ୍ତିତ୍ୱର ନାଁ ମଧୁସୂଦନ -- ମଧୁସୂଦନ ଦାସ !

## ମହାତ୍ମା ଗାନ୍ଧୀଙ୍କ ମାର୍ଗଦର୍ଶକ

ଏକଥା ଖୁବ୍ କମ୍ ଲୋକ ଜାଣନ୍ତି ଯେ, ମଧୁସୂଦନ ସ୍ୱାଧୀନତା ଆନ୍ଦୋଳନର ସଫଳ ନାୟକ ତଥା ଜାତିର ପିତା ମହାତ୍ମା ଗାନ୍ଧୀଙ୍କର ଜଣେ ଶ୍ରେଷ୍ଠ ମାର୍ଗଦର୍ଶକ ଥିଲେ । କେବଳ ଯେ ସେ ମହାତ୍ମାଙ୍କର ପଥ ପ୍ରଦର୍ଶକ ଥିଲେ ତା'ନୁହେଁ; ଅଧିକନ୍ତୁ ଅନେକ କ୍ଷେତ୍ରରେ ମହାତ୍ମା ଗାନ୍ଧୀ ମଧୁସୂଦନଙ୍କୁ ତାଙ୍କର ଗୁରୁ ବୋଲି ମନେ କରୁଥିଲେ ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । କେବଳ ସେତିକି ନୁହେଁ, ମହାତ୍ମା ଗାନ୍ଧୀଙ୍କ ଠାରୁ ବହୁ କାର୍ଯ୍ୟରେ ସେ ଆଗୁଆ ମଧ୍ୟ ଥିଲେ । ମହାତ୍ମା ଗାନ୍ଧୀ ସାରା ଭାରତବର୍ଷରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବାର ବହୁ ବର୍ଷ ପୂର୍ବରୁ ମଧୁସୂଦନ ଓଡ଼ିଶାରେ ତାହା ଆରମ୍ଭ କରିଥିଲେ ଏବଂ ସଫଳ ମଧ୍ୟ ହୋଇଥିଲେ । ସେହିପରି ଗାନ୍ଧିଜୀ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟକ୍ରମ ଆରମ୍ଭ କରିବା ବେଳକୁ ମଧୁସୂଦନ ନିଜ ଟ୍ୟାନେରୀରେ ହରିଜନମାନଙ୍କୁ ସାମିଲ କରାଇ ତାହାର ଶୁଭାରମ୍ଭ କରିସାରିଥିଲେ । ଏହିପରି ଅନେକ ଦୃଷ୍ଟାନ୍ତ ରହିଛି ଯାହାକୁ ନେଇ କୁହାଯାଇ ପାରିବ ଯେ ବହୁ କ୍ଷେତ୍ରରେ ଏବଂ ବହୁ

କାର୍ଯ୍ୟରେ ମହାତ୍ମା ଗାନ୍ଧୀଙ୍କ ଠାରୁ ମଧୁସୂଦନ ଅଗ୍ରଣୀ ଥିଲେ । ସେଇଥିପାଇଁ ମଧୁସୂଦନ ଏକଦା କହିଥିଲେ—ଆଜି ଯାହା ଓଡ଼ିଶା ଆରମ୍ଭ କରେ, ଆସନ୍ତାକାଲି ତାହାକୁ ଭାରତ ଅନୁସରଣ କରେ ।

ସମଗ୍ର ଭାରତ ଭୂଖଣ୍ଡର ଏହି ଦୁଇ ମହାନ୍ ମଣିଷଙ୍କର ୧୯୨୦ ମସିହାରେ ସ୍ୱଳ୍ପ ସମୟ ପାଇଁ ପ୍ରଥମ ସାକ୍ଷାତ ହୋଇଥିଲା । ପରେ ମଧୁସୂଦନ ନିଜେ ୧୯୨୪ ମସିହାରେ ସାବରମତି ଆଶ୍ରମକୁ ଯାଇ ଅବସ୍ଥାନ କରିଥିଲେ ଏବଂ ଗାନ୍ଧୀଙ୍କୁ 'ଉତ୍କଳ ଟ୍ୟାନେରୀ' ପରିଦର୍ଶନ କରିବା ନିମନ୍ତେ କଟକ ଆସିବାକୁ ଆମନ୍ତ୍ରଣ ଜଣାଇଥିଲେ । ୧୯୨୫ ମସିହା ଅଗଷ୍ଟ ୧୯ ତାରିଖ ଦିନ ଗାନ୍ଧୀ କଟକ ଆସି ମଧୁସ୍ମୃତିରେ ଅବସ୍ଥାନ କରିଥିଲେ ଏବଂ ଉତ୍କଳ ଟ୍ୟାନେରୀ ଦେଖି ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ୧୯୩୩ ମସିହା ସେପ୍ଟେମ୍ବର ମାସ ୩ ତାରିଖରେ ହରିଜନ ପତ୍ରିକାରେ ମହାତ୍ମା ଗାନ୍ଧୀ ହରିଜନ କର୍ମୀମାନଙ୍କୁ ପରାମର୍ଶ ଦେଇ ଲେଖିଥିଲେ- 'ତୁମେ ଚମଡ଼ା ପଦାର୍ଥ ସବୁ ଉତ୍ପାଦନ କରିବାକୁ ପରିକଳ୍ପନା କରିଅଛ । ମୁଁ ମଧ ଚମଡ଼ା କାର୍ଯ୍ୟ କରିବାକୁ ଖୁବ୍ ଭଲପାଏ । ତୁମେ ଏହାର ସମସ୍ତ କାର୍ଯ୍ୟ ମଧ ଶିଖିନାହଁ । ତୁମେ କେବଳ ଚପଲ (ଚଟି) ତିଆରି କରି ସନ୍ତୁଷ୍ଟ ହୁଅନାହିଁ । ତୁମକୁ ମଧ ଚମଡ଼ା କଷେଇ କାର୍ଯ୍ୟ କରିବାକୁ ହେବ । ଆମ୍ଭମାନଙ୍କୁ ବଡ଼ବଡ଼ କାରଖାନା ସ୍ଥାପନା କରିବାକୁ ପଡିବ ନାହିଁ । ତୁମର ମଧ ଉଦ୍ୟମ କରିବା ଉଚିତ, ଯେପରି ଗାଁ ଗହଳରେ ଉନ୍ନତ ଧରଣର ଚମଡ଼ା କଷେଇ ଶିଳ୍ପ ସ୍ଥାପନ କରିବା ସମ୍ଭବପର ହୋଇପାରିବ । ମଧୁସୂଦନ ଦାସ କ'ଣ କରୁଥିଲେ ? ସେ ଉତ୍କଳର ସମସ୍ତ କାରିଗରଙ୍କୁ ଏକତ୍ର କରିଥିଲେ । ବହୁତ ହରିଜନ ମଧୁସୂଦନ ଦାସଙ୍କର ତତ୍ତ୍ୱାବଧାନରେ ରହି ଏହି ଚମଡ଼ାଶିଳ୍ପର କାର୍ଯ୍ୟ ସଫଳତାର ସହ ଶିକ୍ଷା କରିଥିଲେ । ମଧୁସୂଦନ ଦାସଙ୍କ ପରି ତୁମେ ମଧ ଏହି କାର୍ଯ୍ୟରେ ପାରଦର୍ଶିତା ଲାଭକର ।'

ପୁଣି ମଧୁସୂଦନଙ୍କ ଦେହାନ୍ତର ଦୁଇମାସ ପରେ ଅର୍ଥାତ୍ ୧୯୩୪ ମସିହା ମେ'ମାସ ୨୩ ତାରିଖରେ ମଧୁସୂଦନଙ୍କ ଜନ୍ମପୀଠ ସତ୍ୟଭାମାପୁରରେ ଅବସ୍ଥାନ କରିବା ବେଳେ ତାଙ୍କର ଅସ୍ପୃଶ୍ୟତା ନିବାରଣ ଉଦ୍ୟମ ବିଷୟରେ ସେପ୍ଟେମ୍ବର ମାସ ୭ ତାରିଖ 'ହରିଜନ' ପତ୍ରିକାରେ ଗାନ୍ଧିଜୀ ଲେଖିଥିଲେ—'ମଣିଷ ସମାଜର ଏକ ଅଂଶ ପ୍ରତି ଆମେ ଯେଉଁ ଅବିଚାର କରି ଚାଲିଛେ, ସର୍ଗତ ମଧୁସୂଦନ ଦାସ ସେ ସମ୍ପର୍କରେ ମୋର୍ ଆଖି ଖୋଲି ଦେଇଥିଲେ ଆଉ ଆମେ ଯେଉଁ ଅପରାଧ କରି

ଚାଲିଛେ, ତାହାର ପ୍ରାୟଶ୍ଚିତ ଓ ନିରାକରଣ ପାଇଁ ସେ ଗୋଟିଏ ଶିକ୍ଷାମୂଳକ ଟ୍ୟାନେରୀ ଖୋଲିଥିଲେ । ତାଙ୍କର ଏହି ଉଦ୍ୟୋଗ ଆଶାତୀତ ସଫଳତା ହାସଲ କରି ନ ଥିଲେ ମଧ ସେ କଟକର ଶହ ଶହ ଜୋତା କାରିଗରଙ୍କୁ ଉନ୍ନତ ଜୀବନ ଧାରଣର ପନ୍ଥା ଯୋଗାଇବାର ଗୁରୁଦାୟିତ୍ୱ ବହନ କରି ଚାଲିଗଲେ ।'

ମହାତ୍ମା ଗାନ୍ଧୀ ଏକଦା ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ ଯେ, ତାଙ୍କ ପାଇଁ ମଧୁସୂଦନ ଥିଲେ ଦ୍ୱିତୀୟ ଟଲଷ୍ଟୟ । ଗାନ୍ଧିଜୀ ଏ ବାବଦରେ ୧୯୩୭ ମସିହା ଅକ୍ଟୋବର ମାସ ୩୧ ତାରିଖରେ ହରିଜନ ପତ୍ରିକାରେ ଉଲ୍ଲେଖ କରିଥିଲେ- 'ମଧୁସୂଦନ ଜଣେ ଆଇନଜୀବୀ ଥିଲେ । ତାଙ୍କର ଦୃଢ଼ ଆତ୍ମପ୍ରତ୍ୟୟ ଓ ସିଦ୍ଧାନ୍ତ ଥିଲା ଯେ ଆମ୍ଭମାନଙ୍କର ହାତ ଓ ପାଦ ବିଧିବଦ୍ଧ ଭାବରେ ଯଦି ନିୟୋଜିତ ନହୁଏ ତା'ହେଲେ ତାହା ସଇତାନର ଆଡ୍‌ଡାସ୍ଥଳୀରେ ପରିଣତ ହେବ । ଟଲଷ୍ଟୟ ମଧ ଏହି ବାର୍ତ୍ତା ତାଙ୍କ ରଚିତ ଅସଂଖ୍ୟ ଗଳ୍ପମାନଙ୍କରେ ପ୍ରଚାର କରି ଯାଇଛନ୍ତି ।'

ବାସ୍ତବରେ ଦେଖିବାକୁ ଗଲେ ବିଶ୍ୱର ପ୍ରବାଦପୁରୁଷ କାଉଣ୍ଟ ଲିଓ ଟଲଷ୍ଟୟ ଏବଂ ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶର ପ୍ରାଣପ୍ରତିଷ୍ଠାତା ମଧୁସୂଦନଙ୍କ ମଧରେ ଅନେକ ସାମଞ୍ଜସ୍ୟ ରହିଥିଲା । ଟଲଷ୍ଟୟ ୧୮୨୮ ମସିହା ଅଗଷ୍ଟ ମାସ ୨୮ ତାରିଖରେ ଜନ୍ମ ଗ୍ରହଣ କରିଥିବା ବେଳେ ମଧୁସୂଦନଙ୍କର ଜନ୍ମ ତାହାର ୨୦ ବର୍ଷ ପରେ ଅର୍ଥାତ୍ ୧୮୪୮ ମସିହା ଏପ୍ରିଲ ୨୮ ତାରିଖରେ ହୋଇଥିଲା । ଟଲଷ୍ଟୟଙ୍କୁ ଘରେ ନୁହେଁ, ମୃତ ଅବସ୍ଥାରେ ଗୋଟିଏ ଟ୍ରେନ୍ କମ୍ପାର୍ଟମେଣ୍ଟରୁ ଉଦ୍ଧାର କରାଯାଇଥିବା ବେଳେ ମୃତ୍ୟୁ ବେଳକୁ ମଧୁସୂଦନ ନିଃସ୍ୱ ହୋଇ ଯାଇଥିଲେ । ତାଙ୍କର ଘର ନ ଥିଲା । କିଛିବର୍ଷ ଆଗରୁ ତାଙ୍କୁ ଅଦାଲତ ଦେବାଳିଆ ଘୋଷଣା କରିଥିଲେ । ମହାତ୍ମା ଗାନ୍ଧୀ ଏକଦା ଉଲ୍ଲେଖ କରିଥିଲେ- 'ଟଲଷ୍ଟୟ ବିଶ୍ୱାସ କରୁଥିଲେ ଯେ ଐଶ୍ୱରୀୟ ନିୟମ ହେଉଛି, ଜଣେ ବ୍ୟକ୍ତି ତାହାର ଖାଦ୍ୟ ନିଜର ହସ୍ତର ଶ୍ରମ ମାଧମରେ ଉପାର୍ଜନ କରିବା ଉଚିତ । ୧୯୨୪ ମସିହାରେ ମଧୁସୂଦନ ପାଟଣା ଠାରେ ବକ୍ତବ୍ୟ ଦେଇ କହିଥିଲେ—'ଜଣେ ବ୍ୟକ୍ତି ଯେଉଁ ହାତରେ ରୁଟି ଖାଏ, ସେହି ହାତରେ ହିଁ ତାକୁ ସେହି ରୁଟି ଉପାର୍ଜନ କରିବାକୁ ପଡିବ ।'

୧୯୨୫ ମସିହାରୁ ୧୯୩୮ ମସିହା ପର୍ଯ୍ୟନ୍ତ ମଧୁସୂଦନଙ୍କୁ ନିଜର ମାର୍ଗଦର୍ଶକ ରୂପେ ଅଭିହିତ କରି ଗାନ୍ଧିଜୀ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ନାମ ଉଲ୍ଲେଖ କରିଥିଲେ । ମଧୁସୂଦନଙ୍କ ଦେହାନ୍ତ ପରେ ତାଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇ ଗାନ୍ଧିଜୀ ଏକ

ଚିଠିରେ ଲେଖିଥିଲେ—'ସ୍ୱର୍ଗତ ମଧୁସୂଦନ ଦାସଙ୍କୁ ଭେଟିବାର ପରମ ସୁଯୋଗ ମତେ ମିଳି ପାରିଥିଲା । ସେ ଜଣେ ମହାନ୍ ଦେଶବତ୍ସଳ ଜନନାୟକ ଥିଲେ । ଦେଶର ତରୁଣମାନଙ୍କୁ ଶ୍ରମର ମର୍ଯ୍ୟାଦା ସମ୍ପର୍କରେ ଶିକ୍ଷା ଦେବାକୁ ଯାଇ ସେ ନିଜକୁ ନିଃଶେଷ କରି ଦେଇଥିଲେ । ଶ୍ରମ ମର୍ଯ୍ୟାଦାର ପ୍ରାମାଣିକ ଶିକ୍ଷା ପ୍ରଦାନ ପାଇଁ ଅସୀମ ସ୍ୱାର୍ଥ ତ୍ୟାଗ ମଧ୍ୟରେ କଟକଠାରେ ଏକ ଟ୍ୟାନେରୀ ପ୍ରତିଷ୍ଠା କରିଥିଲେ ।'

ବାସ୍ତବରେ ମହାତ୍ମା ଗାନ୍ଧୀଙ୍କ ଉପରେ ମଧୁସୂଦନଙ୍କର ପ୍ରଭାବ ଅତ୍ୟନ୍ତ ସୁଦୂରପ୍ରସାରୀ ଥିଲା । ଗାନ୍ଧୀ ଯେଉଁ ସ୍ୱଦେଶୀ ଆନ୍ଦୋଳନର ସୂତ୍ରପାତ କରିଥିଲେ ସେ କ୍ଷେତ୍ରରେ ମଧୁସୂଦନ୍ ତାଙ୍କର ଅଗ୍ରଜ ଥିଲେ । ମଧୁସୂଦନ ସର୍ବଦା ସ୍ୱଦେଶୀ ଶିଳ୍ପାୟନ ଉପରେ ଗୁରୁତ୍ୱ ଦେଉଥିଲେ ଏବଂ ସେଇଥିଲାଗି ଓଡ଼ିଶା ସୂକ୍ଷ୍ମକଳା କାରଖାନା ଓ ଉତ୍କଳ ଟ୍ୟାନେରୀ ପ୍ରତିଷ୍ଠା କରିଥିଲେ । ଗାନ୍ଧିଜୀଙ୍କର ଚରଖା ଆଗରୁ ମଧୁସୂଦନଙ୍କର ଶିଳ୍ପାୟନ ପଦକ୍ଷେପ ତାଙ୍କ ସ୍ୱଦେଶୀ ପ୍ରୀତିର ସଙ୍କେତ ବହନ କରୁଥିଲା, ଯାହା ଗାନ୍ଧୀଙ୍କୁ ବହୁ ଭାବରେ ଅନୁପ୍ରାଣିତ କରିଥିଲା ।

## ବିଶିଷ୍ଟ ବ୍ୟକ୍ତିଙ୍କ ଦୃଷ୍ଟିରେ ମଧୁସୂଦନ

**ମହାତ୍ମା ଗାନ୍ଧୀ :**

ସ୍ୱର୍ଗତ ମଧୁସୂଦନ ଜଣେ ମହାନ୍ ଦେଶପ୍ରେମୀ ଥିଲେ । ତାଙ୍କ ଭଳି ଜଣେ ମହାନ୍ ମଣିଷଙ୍କ ସହିତ ମୁଁ ଭେଟ ହେବାର ସୁଯୋଗ ପାଇଥିଲି । ଧର୍ମକୁ ନେଇ ତାଙ୍କ ଭିତରେ ଖୁବ୍ ଉଦାରତା ଥିଲା; ମାତ୍ର ସେ ଧର୍ମଭୀରୁ ନ ଥିଲେ । ସେଥିପାଇଁ ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରି ବି ଚର୍ଚ୍ଚିଆନ୍ ନ ଥିଲେ । ହିନ୍ଦୁ ଧର୍ମ ପ୍ରତି ତାଙ୍କ ଭିତରେ ଗଭୀର ଶ୍ରଦ୍ଧାଭାବ ଭରି ରହିଥିଲା । ଅସ୍ପୃଶ୍ୟତା ନିବାରଣ ଓ ସ୍ୱଦେଶୀ ଶିଳ୍ପାୟନ କ୍ଷେତ୍ରରେ ସେ ମୋ ଆଖି ଖୋଲି ଦେଇଥିଲେ । ସେ ମୋ ପାଇଁ ଜଣେ ମହାନ୍ ମାର୍ଗଦର୍ଶକ ଥିଲେ ।

**ଶ୍ରୀଅରବିନ୍ଦ :**

ଯୋଗୀ ଶ୍ରୀଅରବିନ୍ଦଙ୍କ ଦୃଷ୍ଟିରେ ମଧୁସୂଦନ ଜଣେ ପରମ ଆଧ୍ୟାତ୍ମିକତାବାଦୀ ନେତା ଓ ଜନନାୟକ ଥିଲେ । ସେ ବିଶ୍ୱାସ କରୁଥିଲେ- ପଛୁଆ ଲୋକଙ୍କର ଉନ୍ନତି ହେଲେ ପଛୁଆ ରାଜ୍ୟର ଉନ୍ନତି ହେବ । ଏହାଦ୍ୱାରା ସମଗ୍ର ଜାତି ଓ ଦେଶର

ଉନ୍ନତି ଘଟିବ । ତେଣୁ ପ୍ରଥମେ ଏହି ପଛୁଆ ବର୍ଗର ଲୋକଙ୍କର ବିକାଶ ଘଟିବା ଉଚିତ । ଓଡ଼ିଶା ଏ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା ଏବଂ ଏସବୁ କେବଳ ମଧୁସୂଦନଙ୍କ ପାଇଁ ହିଁ ସମ୍ଭବ ହୋଇଥିଲା ।

**ଜବାହରଲାଲ ନେହେରୁ :**

ମଧୁସୂଦନ କେବଳ ଓଡ଼ିଶାର ନୁହନ୍ତି; ସମଗ୍ର ଭାରତବର୍ଷର ଜଣେ ଗଭୀର ଦୂରଦୃଷ୍ଟି ସମ୍ପନ୍ନ ଜନନେତା ଥିଲେ । ତାଙ୍କର ଚରିତ୍ର ଓ ଦୂରଦର୍ଶିତା ଉଚ୍ଚକୋଟୀର ଥିଲା । ମୁଁ ପଚାଶ ବର୍ଷ ହେଲା ତାଙ୍କର ନାମ ଶୁଣି ଆସିଛି । ସେ ମୋ ବାପା ମୋତିଲାଲ୍‌ଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ ଏବଂ ତାଙ୍କୁ ମୁଁ ବହୁବାର ଦୂରରୁ ଦେଖିଥିଲି (He was a great friend of my father and I have seen him from a distance.) । ଯେତେବେଳେ ବି ଓଡ଼ିଶା କଥା ଆଲୋଚନାର ପରିସରକୁ ଆସୁଥିଲା ସେତେବେଳେ ମଧୁସୂଦନଙ୍କର ନାମ ଶ୍ରଦ୍ଧାର ସହିତ ଉଚ୍ଚାରଣ କରାଯାଉଥିଲା । ଭାରତୀୟ ସମାଜ ଓ ଅର୍ଥନୀତିକୁ ତାଙ୍କର ବହୁ ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି ।

**ଫକୀରମୋହନ ସେନାପତି :**

" ତୁମେତ ଆଲୁଅ ପ୍ରାପ୍ତ ମୁହିଁ ଅନ୍ଧାରିଆ
କିନ୍ତୁ ଭାଇ ଦୁଇଜଣ ଜାତିରେ ଓଡ଼ିଆ ।
ଦେଖିଲି ଗୋଟିଏ କଥା, ବିଲାତରେ ବୁଲି
ଆପଣା ଦେଶର କଥା ଯାଇନାହିଁ ଭୁଲି ।
ସେଦିନ ପିଆଇ ମୋତେ ଏକ କପ୍ ଚା'
ଦେଖାଇଲ କେତେ ଚିଜ ସାବାସ୍ ଭାଇ ବାଃ ।
ମନ ମାନିଗଲା ପରା ଦେଖି ସେ ଓସ୍ତାତୀ
କଟକର କାରିଗରି ଦ୍ରବ୍ୟ ନାନା ଜାତି ।
ରୂପା ତାରକସି କାମ, ଶିଙ୍ଗର ପାନିଆ
ଅବଶ୍ୟ କହିବି ଏହା ସବୁ ନୂଆନୂଆ ।"

**ଡକ୍ଟର ରାଜେନ୍ଦ୍ର ପ୍ରସାଦ :**

ମୋତିହାରୀରେ ଅନୁଷ୍ଠିତ ହୋଇଥିବା ବିହାର ଛାତ୍ରସଙ୍ଘ ସମ୍ମିଳନୀ ଅବସରରେ ମୋର ମଧୁସୂଦନଙ୍କ ସହିତ ପ୍ରଥମ ସାକ୍ଷାତ ହୋଇଥିଲା । ସେ ସେଠାକୁ ସଭାପତିତ୍ୱ

କରିବା ନିମନ୍ତେ ଯାଇଥିଲେ । ଆମେ ଦୁହେଁ ସାଥୀ ହୋଇ ଚମ୍ପାରନ୍ ଯାଇଥିଲୁ । ସେହି ସମୟରେ ଆମ ଦୁହିଁଙ୍କ ମଧ୍ୟରେ ଅନେକ ପ୍ରକାର କଥୋପକଥନ ହୋଇଥିଲା । ସେହି ପ୍ରଥମ ଦେଖାରେ ହିଁ ସେ ମୋ ଉପରେ ଏକ ଗଭୀର ଛାପ ଛାଡ଼ି ଯାଇଥିଲେ । ତାଙ୍କର ବ୍ୟକ୍ତିତ୍ୱ, ଜ୍ଞାନର ଗଭୀରତା, ନିର୍ଭୀକତା, ଦେଶପ୍ରେମ ମୋତେ ବହୁଭାବରେ ଅନୁପ୍ରାଣିତ କରିଥିଲା ।

**ଶ୍ୟାମାପ୍ରସାଦ ମୁଖାର୍ଜୀ :**

୧୧ ବର୍ଷର ହୋଇଥିବା ବେଳେ ମୁଁ ପ୍ରଥମେ ମଧୁସୂଦନଙ୍କୁ ଭେଟିଥିଲି । ସେ ମୋର ବାପା ସ୍ୱାର ଆଶୁତୋଷ ମୁଖାର୍ଜୀଙ୍କୁ ଦେଖିବା ପାଇଁ କଲିକତା ଆସିଥିଲେ । ମୋ ବାପା ତାଙ୍କୁ ଖୁବ୍ ସମ୍ମାନ ଓ ଆଦର କରୁଥିଲେ । ବାପା ମୋତେ ତାଙ୍କର ପରିଚୟ କରାଇ ଦେଇ କହିଥିଲେ—ତୁମେ ଏହାଙ୍କୁ ଜାଣିନାହଁ ? ଏ ହେଉଛନ୍ତି ମୋର ସବୁଠୁ ପୁରୁଣା ଗୁରୁ ଏବଂ ଓଡ଼ିଶାର ଜଣେ ମହାନ୍ ବ୍ୟକ୍ତିତ୍ୱ । ମୋ ବାପା ସବୁବେଳେ କହୁଥିଲେ- ମଧୁସୂଦନ କେବଳ ମୋତେ ପାଠ ପଢ଼ାଇ ନ ଥିଲେ; ଅଧିକନ୍ତୁ ମୋର ଚରିତ୍ର ଗଠନ ଦିଗରେ ମଧ୍ୟ ଅନେକ ଗୁରୁତ୍ୱପୂର୍ଣ୍ଣ ପରାମର୍ଶମାନ ପ୍ରଦାନ କରିଥିଲେ ।

**ମନ୍ମଥନାଥ ମୁଖାର୍ଜୀ :**

ଯଦି କେବେ ଆଧୁନିକ ଓଡ଼ିଶାର ଇତିହାସ ଲେଖାଯିବ, ତା'ହେଲେ ମଧୁସୂଦନଙ୍କର ନାମ ସର୍ବାଧିକ ଗୁରୁତ୍ୱର ସହିତ ଉଲ୍ଲେଖ କରାଯିବ । ବାସ୍ତବରେ ସେ ଆଧୁନିକ ଓଡ଼ିଶାର ଜଣେ ଧୂରୀଣ ବିଜ୍ଞାଣୀ ଥିଲେ ।

**ନୀଳମଣି ସେନାପତି :**

ମଧୁସୂଦନ ବାସ୍ତବରେ ଓଡ଼ିଶାର ମୁକୁଟବିହୀନ ସମ୍ରାଟ ଥିଲେ । ଏକଥା ତାଙ୍କର ପ୍ରତିଟି କାର୍ଯ୍ୟରୁ ପ୍ରମାଣିତ । ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ସାର ରାମସେ ମ୍ୟାକ୍‌ଡୋନାଲ୍‌ଡ (Sir Ramsay Madonald) ତାଙ୍କ ପୁସ୍ତକରେ ମଧୁସୂଦନଙ୍କୁ ମୁକୁଟ ବିହୀନ ସମ୍ରାଟ (Uncrowned King of Orissa) ବୋଲି ଦର୍ଶାଇଥିଲେ । ଏହା କେବଳ ଜଣେ ବିଦେଶୀ ପ୍ରଧାନମନ୍ତ୍ରୀଙ୍କର ବକ୍ତବ୍ୟ ନ ଥିଲା; ଏହା ସମଗ୍ର ଓଡ଼ିଆ ଜାତିର ସ୍ୱର ଥିଲା ।

# ମଧୁ ରଚନା ସଂଚୟନ

## ଜଣାଣ

ଆହେ ବିଶ୍ୱପତି ଘୁଞ୍ଚାଅ ବିସ୍ମୃତି
ଆଦିମନ୍ତ୍ର ସଦା ଜପୁ ମୋର ମନ
ଗର୍ଭେ ଥିବାବେଳେ ପ୍ରତିଶ୍ରୁତ ହେଲି
ମାତାଙ୍କ ସେବାରେ ଦେବି ମନପ୍ରାଣ ।
ଜନ୍ମ ହେଲାକ୍ଷଣି ସ୍ତନ୍ୟ ଦାନ କରି
ମାତା ମନ୍ତ୍ର ଦେଲେ "ପରାର୍ଥେ ଜୀବନ''
ଶିଶୁକାଳ ବ୍ୟାପି ଥିଲି ମନ୍ତ୍ର ଜପି
ସେ ମନ୍ତ୍ର ଭୁଲିଲି ଲଭିଣ ଯୌବନ ।
ଆଶା ଥିଲା ମନେ ଦେଖିବି ଜୀବନେ
ଉତ୍କଳ ମାତାର ସହାସ୍ୟ ବଦନ
ସେ ଆଶା ତୁଟିଲା ସପନ ଭାଙ୍ଗିଲା
ନ ଦେଖି ଉତ୍କଳେ କରତବ୍ୟ ଜ୍ଞାନ ।

---

## ଉତ୍କଳ ସନ୍ତାନ

ତୁ ପରା ବୋଲାଉ ଉତ୍କଳ ସନ୍ତାନ
ତେବେ କିମ୍ପା ତୁହି ଭୀରୁ,
ତୋହର ଜନନୀ ରୋଦନ କରିଲେ
କହିବାକୁ କିମ୍ପା ଡରୁ ?
ତୋ ପୂର୍ବ ପୁରୁଷେ ବୀର ପଣିଆରେ
ଲଭିଥିଲେ କେତେ ଖ୍ୟାତି,
ହାକିମ ନିକଟେ ଦୁଃଖ କହିବାକୁ
କିମ୍ପା ଥରେ ତୋର ଛାତି ?

## ଜାତିପ୍ରାଣ ମଧୁସୂଦନ

ତୋ ପୂର୍ବ ପୁରୁଷେ ଜୟ କରିଥିଲେ
ଗଙ୍ଗାଠାରୁ ଗୋଦାବରୀ,
ତାଙ୍କରି ଔରସେ ଜନ୍ମ ହୋଇ ତୁହି
କେଉଁ ଗୁଣେ ତାଙ୍କୁ ସରି ?
ବ୍ରିଟେନ୍ ନିବାସୀ ଅତୀବ ସାହସୀ
କାପୁରୁଷେ ଶ୍ରଦ୍ଧା ନାହିଁ,
ଶିଖ ରାଜପୁତ ଯେ ମାନ୍ୟ ଲଭନ୍ତି
ତୋର ଭାଗ୍ୟେ ତାହା କାହିଁ ?
ତୁ ମନେ ଭାବିଛୁ ତୋଷାମୋଦ କରି
ବଢ଼ାଇବୁ ଜାତି ମାନ,
ତୋଷାମୋଦିଆର କୁକୁର ପ୍ରକୃତି
ଅଇଁଠା-ପତରେ ଧ୍ୟାନ ।
ତୋଷାମୋଦକାରୀ କ୍ଷିପ୍ତ ଶ୍ୱାନ ପରି
ସହଜେ ଚିହ୍ନା ନ ଯାଏ,
ଭୃତ୍ୟଭାବ ଧରି ଗୋଡ଼ ଚାଟୁ ଚାଟୁ
ବିଷ ଲେପି ଦେଉଥାଏ ।
ତୋଷାମୋଦ ଅଟେ ଅନ୍ଧାର ଗୋହିରୀ
ସ୍ୱାର୍ଥେ ତହିଁ ଲୁଚି ବସେ,
ସରଳ ପଥିକ ବାଟରେ ଭେଟିଲେ
ଅଜାତରେ ତାକୁ ନାଶେ ।
ଜାତିର ଉନ୍ନତି ହେବ କି ରେ ଭାଇ
ସ୍ୱାର୍ଥକୁ ଜଗତ ମଣି,
ଗୋଦର ଗୋଡ଼ରେ ମାଉଁସ ଲାଗିଲେ
ଦେହର କି ଶୁଭ ଗଣି ?
ଜାତିର ଉନ୍ନତି ସେ କାହୁଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ,

## ଜାତିପ୍ରାଣ ମଧୁସୂଦନ

ଶାଗୁଣା ବିଲୁଆ ଚିକିତ୍ସକ ହେଲେ
ଶବ କି ପାଇବ ପ୍ରାଣ ?
ଜାତି ନନ୍ଦିଘୋଷ ଚଳିବ କି ଭାଇ
ସ୍ୱାର୍ଥକୁ ସାରଥି କଲେ,
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ ?
ସ୍ୱାର୍ଥର ବନିତା ଅଟେ ତୋଷାମୋଦ
ଭୟ, ମିଥ୍ୟା ତାଙ୍କ ପୁତ୍ର
ରାଜ୍ୟରେ ବିପ୍ଳବ ନିଶ୍ଚୟ ଘଟିବ
ଏମାନେ ହେଲେ ଏକତ୍ର ।
ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ,
ପୂରୁବ ଗୌରବ ପୂରୁବ ସାହସ
ପଡ଼ିବ କି କେବେ ମନେ ?
ତୋହର ଜନନୀ ବୀର-ପ୍ରସବିନୀ
ଧୂଳିରେ ପଡ଼ିଛି ଦେଖ,
ଜନ ସମାଜରେ ଏ ମହୀ ମଧ୍ୟରେ
କିପରି ଦେଖାଉ ମୁଖ ?
ତୋ ପୂର୍ବ ପୁରୁଷ ସ୍ୱର୍ଗଧାମେ ଥାଇ
ଭୋଗୁଛନ୍ତି ମନସ୍ତାପ,
ତାଙ୍କର ଜୀବନ କରି ବିସ୍ମରଣ
କରୁଛୁ ତୁ ମନସ୍ତାପ ।
ତୋଷାମୋଦ ଛାଡ଼ି ସ୍ୱାର୍ଥ ପରିହରି
ସତ୍ୟକୁ ଆଶ୍ରୟ କର,
ଦୁଇ ଦିନ ପରେ ସ୍ୱାଧୀନ ରାଷ୍ଟ୍ରରେ
ମଙ୍ଗଳ ହୋଇବ ତୋର ।

---

## ଜାତିପ୍ରାଣ ମଧୁସୂଦନ

## ଜନନୀର ଉକ୍ତି

ମାତା ମାତା ରବ ବହୁଦିନ ହେଲା
ଦୂରରୁ ଶୁଣିଛି ମୁହିଁ,
ଦୂରରୁ ଶବଦ ପବନ ଆଣୁଛି
ନିକଟରେ କେହି ନାହିଁ ।
ଗର୍ଭେ ଧରିଥିଲି ଶତ କର୍ମବୀର
ସେମାନେ ଡାକିଲେ ନାହିଁ,
ବାକ୍ୟବୀରଙ୍କର ରବ ଶୁଣୁଅଛି
କର୍ମବୀର ଗଲେ କାହିଁ ?
ଏକ ପୁତ୍ର ମୋର ନୀଳାଚଳ ଧାମେ
ଉଡ଼ାଇଲା ମୋର ଧ୍ୱଜା,
ସମସ୍ତ ଭାଇଙ୍କୁ କୋଳେ ବସାଇଲା
ଭେଦ ନାହିଁ ରାଜା ପ୍ରଜା
ଇତିହାସ ତୂରୀ ଜଗତେ ଘୋଷୁଛି
ମୋର ସୂତକଙ୍କ ଯଶ,
ତାଙ୍କର ବଂଶଜ ଘୃଣିତ ଓଡ଼ିଆ
ଏହା ମୋ କପାଳ ଦୋଷ ।
ବହୁ କାଳ ଧରି ରୋଦନ କରୁଛି
ନୟନକୁ ଦିଶୁ ନାହିଁ,
ମୋହର ସନ୍ତାନ କତିକି ଆସିଲେ
ଅଣ୍ଡାଳି ଚିହ୍ନିବି ମୁହିଁ ।
ନାହିଁ ମୋର ମାନ ନାହିଁ ମୋର ଧନ
ବଦନେ ଲାଗିଛି ଧୂଳି,
ବୀରପ୍ରସବିନୀ ଶୋଣିତ ରହିଛି
ତୋ ଶିରାରେ ଦେବି ଢାଳି ।

## ଜାତିପ୍ରାଣ ମଧୁସୂଦନ

ସେ ଶୋଣିତ ବଳେ          ବୁଦ୍ଧିର କୌଶଳେ
     ହେବୁ ତୁହି କର୍ମବୀର,
ଅତି ଅଳ୍ପ ଦିନେ          ପ୍ରଭୁଙ୍କ କୃପାରେ
     ତୋର ଦୁଃଖ ହେବ ଦୂର ।

---

## ସନ୍ତାନର ଉକ୍ତି

ମାଆ ମାଆ ବୋଲି          କେତେ ମୁଁ ଖୋଜିଲି
     ମାଆକୁ ପାଇଲି ନାହିଁ,
ଭାଇ ଭାଇ ବୋଲି          କେତେ ମୁଁ ଡାକିଲି
     ନ ଦେଲେ ଉତ୍ତର କେହି ।
ଖୋଜିଲି ଅରଣ୍ୟେ          ଜନସମାଜରେ
     ଖୋଜିଲି ବାରିଧି ତଟ,
ସର୍ବତ୍ର ଦେଖିଲି          ମାତା ପଦଚିହ୍ନ
     ନ ହେଲା ମାତାର ଭେଟ ।
ଭୁବନେଶ୍ୱରରେ          ପଦଚିହ୍ନ ପରେ
     ଲେଖାଅଛି "ରାଜରାଣୀ''
ନୀଳାଚଳ ଧାମେ          ପୂଜା ହେଉଅଛି
     ହିନ୍ଦୁଜାତି ମଥା-ମଣି ।

---

## ଉତ୍କଳଗୌରବରୁ ଭାରତଗୌରବ

ଶୁଣିଅଛି ଶାସ୍ତ୍ରେ ସତୀ ଅପମାନେ
ଧରା ହୁଏ ବିଦାରଣ,
ଅପମାନ ହେତୁ ସୀତା ଦେବୀଙ୍କର
ମହୀହୁଏ ବାସସ୍ଥାନ ।
ଅପମାନ ହେତୁ ଜନନୀ ମୋହର
ଉତ୍କଳ-ଭୂମଧ-ବାସୀ,
ଉତ୍କଳର ମାଟି ପବିତ୍ର ହୋଇଛି
ସ୍ୱର୍ଗାଦପି ଗରୀୟସୀ ।
ଜନନୀର ଦେଖା କରିବାର ଇଚ୍ଛା
ଯଦି ହୋଇଥାଏ ମନେ,
ଉତ୍କଳର ମାଟି ଆଲିଙ୍ଗନ କରି
ତା ଧୂଳି ଲେପ ବଦନେ ।
ବୀରପ୍ରସବିନୀ କୋଟି ସୁତ ମାତା
ପାଇବ କି ଦରଶନ ?
ମୋ ଭଳି ନିର୍ଗୁଣ ଧନ-ମାନ ହୀନ
ସନ୍ତାନ କଲେ ରୋଦନ ।
କୋଟିଏ ସନ୍ତାନ ଗୋଟିଏ ସ୍ୱରରେ
'ଜନନୀ' 'ଜନନୀ' ଡାକ,
ତୃଷାରେ କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ ।
ଧନ,ମାନ, ଜନ ଯାହା ଉପାର୍ଜନ
କରିଅଛି ଧରା ତଳେ
ହରଷିତ ମନେ କରତବ୍ୟ ଜ୍ଞାନେ
ଆଣି ଦିଅ ଯଜ୍ଞସ୍ଥଳେ ।

## ଜାତିପ୍ରାଣ ମଧୁସୂଦନ

ଜାତି ପ୍ରେମ-ବହ୍ନି ପ୍ରଜ୍ଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି,
'ସ୍ୱାର୍ଥମେଧ ଯଜ୍ଞେ' ଚାରିଆଡ଼େ ନାଚ
ଛାତିକୁ ମିଶାଇ ଛାତି ।
ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା,
ସେହି ତୋର ମାତା, ସେହି ତୋର ତ୍ରାତା
କର ସେହି ପାଦ ପୂଜା ।

---

## ସମ୍ମିଳନୀ

ଗଙ୍ଗା ଗୋଦାବରୀ ଯମୁନା କାବେରୀ
ପୂଜା ପାଇ ନାନା ଘାଟେ
ଛାଡ଼ି ନିଜ ମାନ ଲୋଡ଼ି ଜାତି ପ୍ରାଣ
ପ୍ରବେଶିଲେ ସିନ୍ଧୁ ତଟେ ।
କୋଟି ଜଳବିନ୍ଦୁ ମିଶି ହୋଇ ସିନ୍ଧୁ
ଦେଖାଉଛି ଜାତି ବଳ,
ତଟ ସୀମା ଲଂଘି ପରବତ ଭାଙ୍ଗି
ନାଚୁଛି ତରଙ୍ଗମାଳ ।
ଦେଖି ଦେବୀଗଣ ଜାତୀୟ ଜୀବନ
ଛାଡ଼ି ନିଜ ଗର୍ବ ମାନ,
ସିନ୍ଧୁରେ ମିଶିଲେ ଉଲ୍ଲାସେ ନାଚିଲେ
ଲଭି ନୂଆ ଜାତି ପ୍ରାଣ ।
ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତି ପ୍ରାଣ,

## ଜାତିପ୍ରାଣ ମଧୁସୂଦନ

ଜାତୀୟ ଜୀବନ ନ ମିଳିବ କଲେ
ହାଟେ ବାଟେ ଅନ୍ୱେଷଣ ।
ପତିବ୍ରତା ସତୀ ପତିର ମିଳନ
ଲଭିବା ଆଶାରେ ପୋଡ଼େ,
ଜାତିର ମିଳନ ଲଭିବା ଆଶାରେ
ତୋର ପ୍ରାଣ କିଆଁ ଡରେ ?
ଏହି ସମ୍ମିଳନୀ ଜାତି-ପ୍ରାଣ-ସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ,
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ ।
ତରଙ୍ଗ ଉଠିବ ସିନ୍ଧୁ ଗରଜିବ
ଶୁଣିବୁ ସିଂହର ରବ,
ବ୍ରିଟିଶ୍ ରାଜ୍ୟରେ ଓଡ଼ିଆ ଜାତିର
ବଢ଼ିବ ମାନ ଗୌରବ ।

---

ଜାତିପ୍ରାଣ ମଧୁସୂଦନ

## ଜାତି ଇତିହାସ

ଜାତି ଇତିହାସ ଜାତିର ନିର୍ଝର
ତହୁଁ ବହେ ସଦା ଜାତି ପ୍ରାଣଧାର,
ସେ ଧାରାରୁ ନୀର ପିଉଛି ଯେ ନର,
ନିଶ୍ଚୟ ହେବ ସେ ଜାତି-କର୍ମବୀର ।
କଳ କଳ ରବେ ଛୁଟିଛି ସେ ଧାର
ଅତୀତ କୀରତି ଗାଇ ନିରନ୍ତର,
ଭାବୀ କୀରତିର ଉଦୟେ ନାଚୁଛି
ଯଥା ଚନ୍ଦ୍ରୋଦୟେ ନାଚେ ରତ୍ନାକର ।
ଧାର ମଧ୍ୟେ ବିଜେ ମୋହିନୀ ପ୍ରତିମା
ଦେଖ ଦେଖ ସେହି ଜନନୀ ତୋହର,
କାନ ଡେରି ଶୁଣ ମାତା କହୁଛନ୍ତି,
ଆସ ଆସ ବତ୍ସ ନୀର ପାନ କର ।
ଏହି ନୀର ସେବି ବୀର ମୋ ସନ୍ତାନେ,
ବୀରପ୍ରସବିନୀ କ୍ଷୀର ଏହି ନୀର,
ଛାଡ଼ରେ ଆଳସ୍ୟ ବଢ଼ାଅ ସାହସ,
ଜାତି - ନନ୍ଦିଘୋଷ କର ଅଗ୍ରସର ।

---

## ଜାତିପ୍ରାଣ ମଧୁସୂଦନ

# ଜୀବନ ପଞ୍ଜିକା

## ଭାରତଗୌରବ ମଧୁସୂଦନ

୧୮୪୮ ଏପ୍ରିଲ୍ ୨୮' ଜନ୍ମ ।

୧୮୬୪/୬୫ ଏଣ୍ଟ୍ରାନ୍ସ୍ ପାଶ, ବାଲେଶ୍ୱରରେ ଶିକ୍ଷକତା ।

୧୮୬୬ କଲିକତା ଯାତ୍ରା, କଲେଜ୍ ଶିକ୍ଷା ଏବଂ ଖ୍ରୀଷ୍ଟଧର୍ମ ଗ୍ରହଣ ।

୧୮୭୦ ଓଡ଼ିଆ ଲିପିରେ ସଂସ୍କୃତ ପରୀକ୍ଷା ଦାବି ହାସଲ, ବି.ଏ. ପାସ୍, ମାତୃ ମିଳନ ।

୧୮୭୩ ଏମ୍.ଏ. ପାସ୍, ଅଧ୍ୟାପନା, ବିବାହ ।

୧୮୭୮ ବି.ଏଲ୍. ପାସ୍, କଲିକତାରେ ଓକିଲାତି, ପତ୍ନୀବିୟୋଗ ।

୧୮୮୧ କଟକ ପ୍ରତ୍ୟାବର୍ତ୍ତନ ଓ ଓକିଲାତି ।

୧୮୮୨ ଉତ୍କଳସଭାର ଗଠନ ।

୧୮୮୫ ସମ୍ବଲପୁର କଚେରୀରୁ ଓଡ଼ିଆ ଭାଷା ବିଲୋପ ଷଡ଼ଯନ୍ତ୍ର ଓ ଏହାର ପ୍ରତିବାଦ

୧୮୮୬ ଦ୍ୱିତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗଦାନ ।

୧୮୮୭ ଐତିହାସିକ ଶ୍ରୀମନ୍ଦିର ମକଦ୍ଦମା ସଂଚାଳନା, ଜିଲ୍ଲା ବୋର୍ଡ଼ ଭାଇସ୍-ଚେୟାରମ୍ୟାନ୍, ନୂତନ ସ୍କୁଲ ପ୍ରତିଷ୍ଠା, କଟକରେ ପ୍ରଥମ ରଙ୍ଗମଞ୍ଚ ସ୍ଥାପନ, ଶାସ୍ତ୍ରୀୟ ଓ ଓଡ଼ିଶୀ ସଙ୍ଗୀତ ଆସରର ଆୟୋଜନ ।

୧୮୮୮ ବଙ୍ଗଲାଟଙ୍କ ପାଖରେ ଦେଶମିଶ୍ରଣର ଦାବି ।

୧୮୯୬ ବଙ୍ଗ ବ୍ୟବସ୍ଥାପକ ସେବାର ସଦସ୍ୟ । ଲୁଣ ଶିଳ୍ପ ଟିକସ ହ୍ରାସ ପ୍ରସ୍ତାବ ଗ୍ରହଣ ।

୧୮୯୭ ବିଲାତ ଯାତ୍ରା, ଲଣ୍ଡନରେ ଓଡ଼ିଶାର ସଦେଶୀ ଶିଳ୍ପ ପ୍ରଦର୍ଶନ, ଲଣ୍ଡନରେ ଭାରତ ସଚିବ ହାମିଲଟନ୍‌ଙ୍କ ପାଖେ ଦେଶ ମିଶ୍ରଣ ଦାବି, ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳନର ଦାବି, ଓଡ଼ିଶୀ ଆର୍ଟୱେରସ୍ (ତାରକସୀ) ଶିଳ୍ପର ପ୍ରତିଷ୍ଠା ।

୧୯୦୦ ଲର୍ଡ଼ କର୍ଜନଙ୍କର ଭୁବନେଶ୍ୱର, କୋଣାର୍କ ମନ୍ଦିର ପରିଦର୍ଶନ, ଲର୍ଡ଼ କର୍ଜନଙ୍କ ସହ ସାକ୍ଷାତ, ମଧୁସୂଦନଙ୍କ ନିବେଦନରେ ଏହି ମନ୍ଦିର ସମୂହର ସଂରକ୍ଷଣ, ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ପୁନର୍ଗଠନ ।

୧୯୦୧ ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳନ ଦାବି ଲାଗି ବଡ଼ଲାଟ୍‌ଙ୍କୁ ଟେଲିଗ୍ରାମ ପ୍ରେରଣ, ରମ୍ଭା ରାଜପ୍ରାସାଦରେ ଦେଶମିଶ୍ରଣ ସଭା ।

୧୯୦୩ ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳନ, ବ୍ରହ୍ମପୁରରେ ଗଞ୍ଜାମ ଜାତୀୟ ସମ୍ମିଳନୀ (ଏପ୍ରିଲ୍ ୧୧, ୧୨) ।

୧୯୦୪ ଓଡ଼ିଶା ସ୍ପୋର୍ଟସ୍ ଏସୋସିଏସନ୍‌ର ପ୍ରତିଷ୍ଠା, ତାଳଗୁଡ଼ ସଂଘର ପ୍ରତିଷ୍ଠା, ସଦେଶୀ ବସ୍ତ୍ରର ବ୍ୟବହାର ଲାଗି ଆନ୍ଦୋଳନର ଉଦ୍ୟୋକ୍ତା ।

୧୯୦୫ ସମ୍ବଲପୁର ଜିଲ୍ଲା ସମେତ ପଶ୍ଚିମାଞ୍ଚଳ ଗଡ଼ଜାତର ଓଡ଼ିଶା ଡିଭିଜନ୍‌ରେ ମିଶ୍ରଣ, ଉତ୍କଳ ଟ୍ୟାନେରୀର ପ୍ରତିଷ୍ଠା, ହସ୍ତତନ୍ତ ବୟନ କଳାର ପ୍ରଶିକ୍ଷଣ ।

୧୯୦୭ ବିଲାତ ଯାତ୍ରା, ଭାରତ ଶାସନ ସଚିବଙ୍କ ପାଖେ ଦେଶମିଶ୍ରଣ ଦାବି, ଲଣ୍ଡନରେ ସାମ୍ବାଦିକ ସମ୍ମିଳନୀ, ଓଡ଼ିଶାରେ ବନ୍ୟା ଦୁର୍ଗତଙ୍କ ସେବା ।

୧୯୦୯ କଲିକତାରେ ବିଜ୍ଞାନ ଅଧ୍ୟୟନ ଲାଗି ଛାତ୍ରବୃତ୍ତିର ବ୍ୟବସ୍ଥା, ଓଡ଼ିଶା ପ୍ରଜା ପ୍ରତିନିଧି ସଭାର୍ ଗଠନ ।

୧୯୧୨ ମଧୁସୂଦନଙ୍କ ଆପତ୍ତି କ୍ରମେ ପ୍ରଜାସତ୍ୱ ବିଲ୍ ବଡ଼ଲାଟ୍‌ଙ୍କ ଦ୍ୱାରା ଅଗ୍ରାହ୍ୟ । ବିହାର ଓଡ଼ିଶା ପ୍ରଦେଶ ଗଠନ ।

୧୯୧୩ ଇମ୍ପେରିଆଲ୍ କାଉନ୍‌ସିଲ୍ ସଦସ୍ୟ ।

୧୯୧୪ ପାରଳା ରାଜାଙ୍କ ଉତ୍କଳ ସମ୍ମିଳନୀରେ ଯୋଗଦାନ, ଭ୍ରାତୃବିୟୋଗ (ଗୋପାଳ ବଲ୍ଲଭ ଦାସ) ।

୧୯୧୭ ମଣ୍ଟେଗୁ ଚେମସ୍‌ଫୋର୍ଡ଼ କମିଟିରେ ସାକ୍ଷ୍ୟ ପ୍ରଦାନ ।

୧୯୨୦ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ, ଉତ୍କଳ ସମ୍ମିଳନୀର କଂଗ୍ରେସରେ ମିଶ୍ରଣ (ଚକ୍ରଧରପୁର) ।

୧୯୨୧ ବିହାର-ଓଡ଼ିଶାର ମନ୍ତ୍ରୀତ୍ୱ ଗ୍ରହଣ, ଐତିହାସିକ ସ୍ୱାୟତ୍ତ ଶାସନ ଓ ମ୍ୟୁନିସିପାଲିଟି ସଂଶୋଧନ ଆଇନ୍ ପ୍ରଣୟନ, ପ୍ଲେଗ ପୀଡ଼ିତଙ୍କ ସେବା ।

୧୯୨୩ ଭାରତୀୟ ନାରୀମାନଙ୍କୁ ଆଇନ୍‌ଜୀବୀର ଅଧିକାର ପ୍ରଦାନ, ମନ୍ତ୍ରୀତ୍ୱରୁ ଇସ୍ତଫା ।

୧୯୨୪ ଫିଲ୍‌ପ୍-ଡଫ୍ କମିଟିରେ ସାକ୍ଷ ପ୍ରଦାନ । ଜାତୀୟ କଂଗ୍ରେସରେ ଯୋଗଦାନ ।

୧୯୨୭ ଦେଓ୍ୱାଳିଆ ଘୋଷଣା ।

୧୯୨୮ ମଧୁବାବୁଙ୍କ ପ୍ରେରଣାରେ ସାଇମନ କମିଶନ୍‌ଙ୍କୁ ପାଟଣାରେ ସ୍ୱାଗତ । ଜାତୀୟ କଂଗ୍ରେସରୁ ଇସ୍ତଫା ।

୧୯୩୦ ଅଟଲୀ ସବ୍‌କମିଟିର ରିପୋର୍ଟ (ସେପ୍‌ଟେମ୍ବର ୨୦)

୧୯୩୧ ପାରଳା ମହାରାଜାଙ୍କର ଗୋଲ୍ ଟେବୁଲ୍ ବୈଠକରେ ଯୋଗଦାନ, ଓଡେନେଲ୍ କମିଟିରେ ସାକ୍ଷ୍ୟ ପ୍ରଦାନ ।

୧୯୩୩ ମଧୁସୂଦନଙ୍କ ଜାତି ପ୍ରତି ଅନ୍ତିମ ଭାଷଣ (ଫେବୃଆରୀ ୧୨ ଓ ୧୩) । ଓଡ଼ିଶା ପ୍ରଦେଶ ଗଠନ ଘୋଷଣା (ମାର୍ଚ୍ଚ ୧୭), ମଧୁସୂଦନଙ୍କ ନିର୍ଦ୍ଦେଶରେ ପାରଳା ମହାରାଜାଙ୍କ ବିଲାତ ଯାତ୍ରା, ଓଡ଼ିଶା ଏଡ଼ମିନିଷ୍ଟ୍ରେଟିଭ୍ କମିଟିରେ ସାକ୍ଷ୍ୟ ଓ ସ୍ୱାକ୍ଷର (ଅକ୍‌ଟୋବର ୧୭), ଜୟପୁର ଓ ପାରଳା ମିଶ୍ରଣର ପ୍ରଚେଷ୍ଟା (ମଇ ୨) ।

୧୯୩୪ ମହାପ୍ରୟାଣ (୪-୨-୧୯୩୪) ।



ଉତ୍କଳ ସମ୍ମିଳନୀର ନେତା ମଧୁସୂଦନ - ୧୯୦୩



ମଧୁସୂଦନଙ୍କ କୋଳରେ ଯୁବରାଜ ବୀରକିଶୋର



କୂଳବୃଦ୍ଧ ମଧୁସୂଦନ



ଡକ୍ଟର ବିମଳେନ୍ଦୁ ମହାନ୍ତି ଓଡ଼ିଶାର ଶିକ୍ଷା, ସଂସ୍କୃତି, ପ୍ରଶାସନ, ଅଧ୍ୟାପନା ଓ ସଂଗଠନ ଆଦି ବିଭିନ୍ନ କ୍ଷେତ୍ରରେ ଜଣେ ସୁପରିଚିତ ବ୍ୟକ୍ତି । କଟକର ଷ୍ଟୁଆର୍ଟ ସାଇନ୍ସ କଲେଜ୍‌ରେ ୧୯୬୦ ମସିହା ଅଗଷ୍ଟ ୫ ତାରିଖରୁ ଅଧ୍ୟାପକ ରୂପେ ନିଜର କର୍ମଜୀବନ ଆରମ୍ଭ କରି ୪୧ ବର୍ଷ କାଳ ନିରବଚ୍ଛିନ୍ନ ଭାବରେ ଓଡ଼ିଶା ଓ ଭାରତ ସରକାରଙ୍କର ବିଭିନ୍ନ ବିଭାଗରେ କାର୍ଯ୍ୟକରି ୨୦୦୧ ମସିହା ଅକ୍ଟୋବର ୫ ତାରିଖରେ କୁଳପତି ପଦରୁ ଅବସର ଗ୍ରହଣ କରିଛନ୍ତି ।

ସେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ଜାଭିୟର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜ୍‌ମେଣ୍ଟର ପ୍ରଥମ ରେଜିଷ୍ଟ୍ରାର, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର ପ୍ରଥମ ଛାତ୍ର କଲ୍ୟାଣ ବିଭାଗର ଡିନ୍, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ନିର୍ଦ୍ଦେଶକ, ଭାରତ ସରକାରଙ୍କର ମାନବ ସମ୍ବଳ ବିକାଶ ବିଭାଗ ଅଧୀନରେ ଥିବା ଜାତୀୟ ସେବା ଯୋଜନାର ଉପମୁଖ୍ୟ ପରାମର୍ଶଦାତା, ଜାତୀୟ ସମର ଶିକ୍ଷାର୍ଥୀ ବାହିନୀର ମେଜର୍, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଯୁବ କଲ୍ୟାଣ ଅଧିକାରୀ ଭାବେ କାର୍ଯ୍ୟ କରି ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରି ଏକ ଆଦର୍ଶ ବ୍ୟକ୍ତି ରୂପେ ପରିଗଣିତ ହୋଇଛନ୍ତି । ଜଣେ ଲେଖକ ଓ ସୁବକ୍ତା ଭାବେ ସେ ସୁପରିଚିତ ଓ ସୁପ୍ରତିଷ୍ଠିତ । ଛାତ୍ର ଅବସ୍ଥାରୁ ଜଣେ କ୍ରୀଡ଼ାବିତ୍ ଓ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀରେ ନିଜର ବିଶେଷ କୃତିତ୍ୱ ଯୋଗୁଁ ସେ ନିଜର ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିଥିଲେ ।

ଡକ୍ଟର ମହାନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. (ଇତିହାସ), ଆମେରିକାର ମିଶୋରୀ ବିଶ୍ୱବିଦ୍ୟାଳୟରୁ ଏମ୍.ଇଡ଼ି., ରାଞ୍ଚି ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଡିଗ୍ରୀ ହାସଲ କରିଛନ୍ତି ।

ଜଗତ୍‌ସିଂହପୁର ଜିଲ୍ଲା ପୁନଙ୍ଗ ଗ୍ରାମପଞ୍ଚାୟତର ମଂଗଳପୁର ଗ୍ରାମରେ ୧୯୩୭ ମସିହା ଡିସେମ୍ବର ୯ ତାରିଖରେ ଡକ୍ଟର ମହାନ୍ତିଙ୍କ ଜନ୍ମ ।



ଜ୍ଞାନଯୁଗ ପବ୍ଲିକେଶନ
ଭୁବନେଶ୍ୱର
Email : contact@gyanajuga.com,
website : wwwgyanajuga.com

